## ମୁଖବନ୍ଧ

ମହାକବି କାଳିଦାସକୃତ ମେଘଦୂତର ଏହି ଅନୁବାଦ କାର୍ଯ୍ୟ **2020**ରେ ସରିଥିଲା । ସେତେ ବେଳେ ମୋତେ ଛନ୍ଦ ଜଣା ନ ଥିଲା । ଅତଃ ଏକ ଜନପ୍ରିୟ ପଦନ୍ୟାସ ଶୈଳୀ ବଙ୍ଗଳାଶ୍ରୀରେ ଏହି ଅନୁବାଦ କରିଥିଲି । ସେହି ଲେଖା ଏବେ ଲୋକସମକ୍ଷରେ ପରିବେଷଣ କରୁଛି ।

**2021** ମଧ୍ୟଭାଗରେ ଭାରତୀୟ ଛନ୍ଦ ବ୍ୟବସ୍ଥା କଥା କିଛି କିଛି ଶୁଣିଲି । ଆଗ୍ରହ ବଢ଼ିବାରୁ ଧୀରେ ଧୀରେ କିଛି ଛନ୍ଦୋଗ୍ରନ୍ଥ ମଧ୍ୟ ପାଇ ପାରିଲି । ଛନ୍ଦଃଶାସ୍ତ୍ରରେ ପ୍ରବେଶ ହେଲା । ଏବେ ଆଗ ପରି ସରଳ ନିରାୟାସ ଗୀତର କବିତା ମୁଁ ଆଉ ପ୍ରାୟ ଲେଖୁ ନାହିଁ । କାରଣ ଛନ୍ଦଃରଚନାର ଆନନ୍ଦ ଗୀତକବିତାରୁ ମୋତେ ମିଳୁ ନାହିଁ । ଛନ୍ଦରେ କଠୋର ଶୃଙ୍ଖଳା ଅଛି, ଶାସ୍ତ୍ରୀୟ ମହତ୍ତ୍ୱ ଅଛି । ଅଭିନବ ମାଧୁର୍ଯ୍ୟ ଅଛି ଅନେକ ଐତିହ୍ୟ ମୁଁ ଅନୁଭବ କରୁଛି । ଏହା ମୋ ନିଜ କଥା, ଅନ୍ୟ କାହା କଥା ଏଠାରେ କହୁ ନାହିଁ ।

ଛନ୍ଦଃସଂରଚନା ସଙ୍ଘର୍ଷମୟ, ବହୁ ପ୍ରୟାସସାପେକ୍ଷ । ଉଦ୍ୟମ ସଫଳ ହେଲେ ଯୁଦ୍ଧଜୟର ହର୍ଷୋଲ୍ଲାସ ଅଛି । ତୁଚ୍ଛା ଅକ୍ଷର ଗଣି ଶେଷାକ୍ଷର ମିଳନରେ ମୋତେ ଆଉ ବିଶେଷ ମହତ୍ତ୍ୱ ଦିଶୁନାହିଁ ।

ତେଣୁ ଅନ୍ୟ କିଛି କିଛି ଉତ୍କଳୀୟେତର ଭାଷାରୁ ଅନୁବାଦ କଲା ଭିତରେ ଏବେ ସେହି ମେଘଦୂତର ଅନୁବାଦ ପୁଣି ଥରେ କରୁଛି - ଏ ଥର ମନ୍ଦାକ୍ରାନ୍ତାରେ, ଯେଉଁ ଛନ୍ଦରେ କାଳିଦାସ ଲେଖି ଥିଲେ ମେଘଦୂତ । ଏହାର ପ୍ରଥମ ଭାଗ, ପୂର୍ବମେଘ, କେବେଠୁ ସରିଛି । ମନ୍ଦାକ୍ରାନ୍ତାରେ ଉତ୍ତରମେଘରୁ ବି ୧୦ଟି ପଦ ଅନୁବାଦ କରି ଦେଇଛି । ଆଉ ରହିଲା ୪୫ ପଦ । ସରିଗଲେ ତାକୁ ମଧ୍ୟ ସଭିଙ୍କ ପଢ଼ିବା ପାଇଁ ସମର୍ପି ଦେବି - ଏହି ପରି ଭାବିଛି ।

ଏହି ବିତରଣରେ ମୋ ଦେଇ ଆଗରୁ ସମ୍ପୂର୍ଣ୍ଣ ହେଇଥିବା ସେହି ବଙ୍ଗଳାଶ୍ରୀ ପଦନ୍ୟାସର ଅନୁବାଦ ହିଁ ଦେଇଛି । ଏବେ ତାହାକୁ ପଢୁ ଥାନ୍ତୁ । ଆଶା ରଖୁଛି, ଭଲ ଲାଗିବ । କିଛି ତଥାକଥିତ କଠିନ ଶବ୍ଦର ଅର୍ଥ ମଧ୍ୟ ସେହି ସେହି ପଦର ସମାପ୍ତି ପରେ ହିଁ ଦେଇ ଦେଇଛି । ତେଣୁ ବୁଝିବାରେ ଅସୁବିଧା ହେବ ନାହିଁ ।

ସଭିଙ୍କ ହିତକାମନା ।
ଉତ୍କଳଜନନୀର ଜୟ ହେଉ ।

ବିନୀତ ଲଲାଟେନ୍ଦୁ କଡି
ଭୁବନେଶ୍ୱର ଜୁଲାଇ ୨, ୨୦୨୫ ।

# ସୂଚୀ

# ମେଘଦୂତ

ପୂର୍ବମେଘଃ 01-66 & ଉତ୍ତରମେଘଃ 01-45

## *ଅନୁବାଦ:— ଲଲାଟେନ୍ଦୁ କବି*  ପୂର୍ବମେଘଃ

୧

ସେ କେହି ବିରହୀ  ପ୍ରଭୁଶାପ ବହି  ସହଜ ଶକତି ହାରି,
ବରଷକ ଲାଗି  ସାଜିଲା ଅଭାଗୀ  ରାମଗିରିବନଚାରୀ ।
ସୀତାସ୍ନାନଜଳେ  ପୁଣ୍ୟପୂତ ସ୍ଥଳେ  ଯକ୍ଷ କଲା ସଂନିବାସ,
ସ୍ନିଗ୍ଧ ତରୁତଳ  ଛାୟା ସୁଶୀତଳ,  ଦେଖିଲା ସେ ଇତିହାସ ।  ୧

ସହଜ= ସହଜାତ; ସମ୍ବତ୍ସର= ବର୍ଷକ;

୨

ସେ ଦୂର ଭୂଧରେ  ବିରହ କାତରେ  ଅବସାଦେ ବସି ବସି
ତନୁ ହେଲା କ୍ଷୀଣ,  ସୁବର୍ଣ୍ଣ କଙ୍କଣ  ମଣିବନ୍ଧୁ ଗଲା ଖସି ।
ଆଷାଢମାସରେ  ପ୍ରଥମ ବାସରେ  ଗିରିଶିଖେ ଦେଖି ମେଘ
ପ୍ରମତ୍ତ କୁଞ୍ଜର  ଭୂଦ୍ୟୁତ-ତତ୍ପର,  ବଢିଲା ହୃଦୟ ବେଗ ।  ୨

ଭୂଧର= ପର୍ବତ; ବାସର= ଦିବସ; କୁଞ୍ଜର= ହାତୀ; ଭୂଦ୍ୟୁତ= ମାଟିଖେଳ;

୩

କଣ୍ଠ-ଆଲିଙ୍ଗନ-  ବ୍ୟାକୁଳିତ ମନ  ସହସା ହେଲା ଚଞ୍ଚଳ,
ସୁଦୂର ପ୍ରବାସେ  ଭାବର ଉଚ୍ଛ୍ୱାସେ  ବେନି ନେତ୍ର ଛଳଛଳ ।
ଅମ୍ବୁଦଲୋକନେ  ସକୁଶଳ ଜନେ  ଆସେ ପ୍ରିୟା-ବିହ୍ୱଳତା,
ଯକ୍ଷ ଭାଳେ ବସି  କାହିଁ ମୋ ପ୍ରେୟସୀ,  ସହଜେ ବିରହୀ କଥା । ୩

ଅମ୍ବୁଦଲୋକନେ= ମେଘଦର୍ଶନରେ; ସକୁଶଳଜନେ= କୁଶଳରେ ଥିବା ଲୋକଙ୍କଠାରେ (ମଧ୍ୟ);

୪

ବରଷା ଆଗମେ  ବଲ୍ଲଭା ସ୍ୱଧାମେ  ଜୀବନେ ରହିବା ଆଶେ
ହେଲା ଉତ୍ସୁକତା  ଦେବ ଶୁଭବାର୍ତ୍ତା  ମେଘ ହାତେ ପ୍ରିୟା ପାଶେ ।
କାମାତୁର ମନ  ଚେତନାଚେତନ  ପ୍ରଭେଦନ ଜ୍ଞାନ ଭୁଲି
କଳ୍ପନା-ମଲ୍ଲିକା-  କାନନ-କଳିକା  ଦେଲା ତାକୁ ଅର୍ଘ୍ୟାଞ୍ଜଳି । ୪

ବଲ୍ଲଭା= ପ୍ରେମିକା, ଭାର୍ଯ୍ୟା; ଚେତନାଚେତନ= ଚେତନ ଓ ଅଚେତନ; ପ୍ରଭେଦନ= ପ୍ରଭେଦ କରିବା, differentiation;

୨୦୧୮୧୦୧୮୧୮୪୨

୫

ସଲିଳମରୁତ- ଧୂମ-ଜ୍ୟୋତିର୍ଯୁତ କିଏ ନର ତୁମ ସରି,<br>
ସନ୍ଦେଶବାହକ ସମର୍ଥ ପୁତ୍ରକ, ବୁଝିବ ମୋ ସହଚରୀ?<br>
ଏମନ୍ତ ବିଚାରି ହସ୍ତକ ପ୍ରସାରି କଲା ସାଷ୍ଟ୍ୟ ନିବେଦନ,<br>
ବୁଝେନା ଆତୁର ବିରହବିଧୁର ଚେତନ କେ ନିଶ୍ଚେତନ । ୫

ହସ୍ତକ=ହାତ;

୬

ଜାଣେ ତୁମ୍ଭେ ଜାତ ଚରାଚରେ ଖ୍ୟାତ ପୁଷ୍କରାବର୍ତ୍ତକ କୁଳେ,<br>
ଇଚ୍ଛାରୂପଧାରୀ ସଦା ସଦାଚାରୀ ଇନ୍ଦ୍ରସଖା ଅଦ୍ରିତୁଳେ ।<br>
ବିଧିର ଏ କ୍ରିୟା ଦୂରେ ତେଜି ପ୍ରିୟା ମାଗେ ଦୟା ହୀନବଳ,<br>
କୁଳଜଠୁ ନାସ୍ତି ହେଉ ପଛେ ପ୍ରାପ୍ତି ଦୁର୍ଜନଠୁ କି ବା ଫଳ? ୬

ପୁଷ୍କରାବର୍ତ୍ତକ= ପୁଷ୍କର ଓ ଆବର୍ତ୍ତକ; ଅଦ୍ରି= ପର୍ବତ;

୭

ସନ୍ତାପନାଶନ ତୁମ୍ଭେ ପର୍ଣ୍ଣାଶନ, ସନ୍ତପ୍ତ ମୁଁ ଶାପୋଷ୍ମନେ,<br>
ମୋ ଶୁଭସନ୍ଦେଶ ନିଅ ଦୂରଦେଶ- ପ୍ରିୟା ପାଶ ନିକାଞ୍ଚନେ ।<br>
ଯିବ ବହୁ ଦୂର ମୋ ଅଳକାପୁର ରମ୍ୟ ହର୍ମ୍ୟ-ସୁଶୋଭିତ,<br>
ଶଙ୍କରସେବିତ ପୁଷ୍ପବନାଶ୍ରିତ ଶଶିପ୍ରଭା ବିଶୋଧିତ । ୭

ଉଷ୍ମନ୍= ତାତି, heat; ପର୍ଣ୍ଣାଶନ= ପତ୍ରଭୋଜୀ (ମେଘର ଅନ୍ୟ ନାମ); ହର୍ମ୍ୟ= ପ୍ରାସାଦ building; ଶଶିପ୍ରଭା= ଚନ୍ଦ୍ରକିରଣ;

୮

ହେଲେ ବ୍ୟୋମଚାରୀ ପଥେ ରିକ୍ତା ନାରୀ କୁଞ୍ଚିତ କୁନ୍ତଳ ଟେକି<br>
ଆଶ୍ୱସ୍ତ ନୟନେ ଚାହିଁବେ ଗଗନେ ପ୍ରିୟ ଲେଉଟିବ ବୋଲି ।<br>
ଦୂରେ କେ ଥିବେ କି ପ୍ରିୟାରେ ଉପେକ୍ଷି ଦେଖି ତୁମ୍ଭ ବିସ୍ତାରଣ?<br>
ମୁହିଁ କର୍ମାସୀନ ବୃତ୍ତିର ଅଧୀନ ଭାଗ୍ୟହୀନ ଅକିଞ୍ଚନ । ୮

ବିସ୍ତାରଣ= ବ୍ୟାପି ଯିବା; କୁନ୍ତଳ= ବାଳ: କର୍ମାସୀନ= ଚାକିରୀ କରିଛି, ଡ୍ୟୁଟିରେ ରହୁଛି;

୯

ଦେଖ ଯାଇ ତ୍ୱରା ଜୀବିତା କାତରା ଅଶ୍ରୁସିକ୍ତା ଅସହାୟା,<br>
ସ୍ନିଗ୍ଧ ଶାକୀଛାୟା ମଧ୍ୟେ ଶୀର୍ଣ୍ଣକାୟା ପତିବ୍ରତା ଭ୍ରାତୃଜାୟା ।<br>
ଦିନ ଗଣି ଗଣି ଥିବ ସେ ରମଣୀ ଆଶାବୃନ୍ତେ ପୁଷ୍ପ ପରି,<br>
ସ୍ୱଭାବେ ତ ନାରୀ ମୃଦୁମତି ଭାରି, ବିରହରେ ପଡେ ଝରି । ୯

ତ୍ୱରା= ଶୀଘ୍ର; ଶାକୀ= (ଶାକ ବା ପତ୍ର ଥିବା ହେତୁ ଶାକୀ, ଶାଖା ଥିବାରୁ ଶାଖୀ ମଧ୍ୟ ହୁଏ ।) ଗଛ; ଭ୍ରାତୃଜାୟା= ଭାଉଜ;

୧୦

ଯାତ୍ରା ଉତ୍ସର୍ପଣେ          ମୈତ୍ର ସମୀରଣେ          ଧୀରେ  ଯିବ ମନମତେ,
ଆହ୍ଲାଦେ ଚାତକ          ହେବେ ଗାନ୍ଧର୍ବକ          ବାମ ଧାରେ ତୁମ ପଥେ ।
ଗର୍ଭସମୁଦୟ-          ସହର୍ଷହୃଦୟ          ପଙ୍କ୍ତି ପଙ୍କ୍ତି ମରୁବକୀ
ପୁଷ୍ପମାଲ୍ୟ ସମ          ଥିବେ ଅନୁପମ          ତୁମ ଶୂନ୍ୟବର୍ତ୍ମ ସଖୀ ।    ୧୦

ଉତ୍ସର୍ପଣ= ବହିର୍ଗମନ, going out; ମୈତ୍ର= ବନ୍ଧୁତ୍ୱପୂର୍ଣ୍ଣ, friendly; ଗାନ୍ଧର୍ବକ= ଗାୟକ; ଗର୍ଭସମୁଦୟ= ଗର୍ଭାଧାନ; ମରୁବକୀ= ବଗୁଲୀ; ଶୂନ୍ୟବର୍ତ୍ମ= ଆକାଶପଥ;        ୨୦୧୮୧୦୨୦୧୬୩୨

୧୧

ତୁମ ପ୍ରଗର୍ଜନେ          ଭୂସ୍ଫୋଟ ସ୍ଫୋଟନେ          ଧରା ହେବ ଶସ୍ୟବତୀ,
ଚଞ୍ଚୁରେ ମୃଣାଳ          ଘେନି ଏ ମରାଳ          ସାଥେ ଯିବେ ପଙ୍କ୍ତି ପଙ୍କ୍ତି ।
ରାଜହଂସ ସର୍ବେ          ତୁମ ସଙ୍ଗେ ନଭେ          ଯିବେ ମାନସରୋବର,
ଥିବ ମୋ ସହିତ          ତୁମ୍ଭ ପ୍ରିୟ ମିତ          ରାମଗିରି ମହୀଧର ।    ୧୧

ପ୍ରଗର୍ଜନ= ଗର୍ଜନ; ଭୂସ୍ଫୋଟ= ଛତୁ; ସ୍ଫୋଟନ= ଫୁଟିବା; ମୃଣାଳ= ପଦ୍ମନାଡ; ମହୀଧର= ପର୍ବତ;       ୨୦୧୮୧୦୨୦୨୩୪୦

୧୨

ଜଗତବନ୍ଦନ          ଶ୍ରୀରଘୁନନ୍ଦନ          ପଦଚିହ୍ନସୁଶୋଭନ
ଏ ଗିରିମେଖଳା          ଉଦ୍ବାରେ ଉଦ୍ଗନ୍ଧା          କର ତାକୁ ଆଲିଙ୍ଗନ ।
ପ୍ରତି ସମ୍ବତ୍ସରେ          ତୁମ ସଂସ୍ପର୍ଶରେ          କଷଣ ସେ ଦିଏ  ହାରି,
ସେ ମିତ୍ର ବିଦାୟ          ଦେବ ମହାକାୟ          ଉଷ୍ଣ ବାଷ୍ପ ସମୁଦ୍ବାରି !  ୧୨

ଶ୍ରୀରଘୁନନ୍ଦନ= ଶ୍ରୀରାମ; ଗିରିମେଖଳା= ପର୍ବତର ମଧଭାଗ; ସମ୍ବତ୍ସର= ବର୍ଷ; ସମୁଦ୍ବାର, ଉଦ୍ବାର= ସିଞ୍ଚନ, emiting; ଉଦ୍ଗନ୍ଧା= ସୁଗନ୍ଧ, ଅତର;       ୨୦୧୮୧୦୨୨୦୦୪୫

୧୩

ଶୁଣ ବାରିଧର          ଆଦ୍ୟରେ ଏଥର          ସୁଗମ ଗମନପଥ,
କହିବି ତା ପରେ          ଥିବ ଯା ପଥରେ          ତନୁ ହେଲେ ତୃଷାଗ୍ରସ୍ତ !
କରୁଥିବ ସାଥୀ          ଆସିଗଲେ ଶ୍ରାନ୍ତି          ଗିରିଶିଖେ ସୁଖାସନ,
ତୃଷାରେ ଶରୀର          ଲାଗିଲେ ଅଧୀର          ତଟିନୀର ନୀରପାନ ।  ୧୩

ସୁଖାସନ= ସୁଖରେ ଉପବେଶନ/ବସିବା;       ୨୮୧୮୧୦୨୨୦୨୧୫

୧୪

ଯାତ୍ରା ଉପକ୍ରମ          ସରଜିବ ଭ୍ରମ          କ୍ଷିପ୍ର ତୁମ ନିର୍ଗମନେ:
ଅଚଳ ଶିଖର          ପ୍ରଚଳ ପ୍ରଖର          ପ୍ରଳୟର ପ୍ରଭଞ୍ଜନେ ।
ଚକିତା ଅଙ୍ଗନା          ଥିବେ ତ୍ରସ୍ତମନା,          ତାଙ୍କୁ ଦେବ ଆଶ୍ୱାସନ,
ବାରଣ ବାରଣ          କରି ନିବାରଣ          ତେଜିବ ବେତସ ବନ ।   ୧୪

ବାରଣ ବାରଣ= ଗଜଦ୍ୱାରା ପ୍ରତିରୋଧ;  ୨୦୧୮୧୦୨୩୦୦୨୨

୧୫

ଅଗ୍ରେ ପ୍ରତିଭାତ   କୀଟୋତ୍କରଜାତ   ଦୀପ୍ତ ଶକ୍ରଶରାସନ,
ସପ୍ତଧାବରଣୀ   ପଦ୍ମନାଗମଣି,   ଶିଖୀପୁଚ୍ଛ ସୁଶୋଭନ ।.
ତହିଁ ସମ୍ପ୍ରବେଶେ   ଶ୍ରୀନିବାସ ବେଶେ   ବିଷ୍ଣୁ ଜଗଦୀଶ ପରି,
ବିଗ୍ରହ ତୁମ୍ଭର   ହେବ ମନୋହର   ଦିବ୍ୟ ଆଭୂଷଣେ ଭରି ।  ୧୫

କୀଟୋତ୍କର= ଉଇହୁଙ୍କା (ଉଇହୁଙ୍କା ସ୍ତମ୍ଭରେ ଇନ୍ଦ୍ରଧନୁ ଛିଡା ହେଇଥାଏ ବୋଲି); ଶକ୍ର= ଇନ୍ଦ୍ର; ଶରାସନ= ଧନୁ; ଶିଖୀ= ମୟୂର; ସମ୍ପ୍ରବୃଶ= ପ୍ରବେଶ; ସପ୍ତଧା= ସାତ ପ୍ରକାର; ଶ୍ରୀନିବାସ= ଶ୍ରୀକୃଷ୍ଣ;  ୨୦୧୮୧୦୨୪୧୭୧୦

୧୬

ଆହେ କ୍ଷେତ୍ରପତି   ସର୍ବ ଶସ୍ୟୋତ୍ପତ୍ତି   ଧରାତଳେ ବର୍ଷାଜଳେ,
ଭ୍ରୂଲତାଚାତୁରୀ-   ହୀନା ପଲ୍ଲୀନାରୀ   ନିରେଖିବେ ପ୍ରେମୋଚ୍ଛଳେ ।
ମାଳ ଭୂମି ପରେ   ଚଳିବ ଉତ୍ତରେ   ଦେଖି ସେହି କମ୍ରାନନେ
ଗ୍ରୀଷ୍ମଦଗ୍ଧ ଧରା   କରି ଗନ୍ଧଭରା   ସ୍ନିଗ୍ଧ ପର୍ଜନ୍ୟ ସିଞ୍ଚନେ ।  ୧୬

ପ୍ରେମୋଚ୍ଛଳେ= ଉଚ୍ଛଳ ପ୍ରେମରେ; ପର୍ଜନ୍ୟ= ବର୍ଷା;  ୨୦୧୮୨୦୨୫୦୧୪୩

୧୭

ବନାଗ୍ନିଦହନ   ହେଲେ ଅସହନ   ତୁମେ କର ଅବସାନ,
ତୁମ ଶ୍ରାନ୍ତ ଦେହେ   ଆମ୍ରକୂଟ ସ୍ନେହେ   ଶିରେ ନିଶ୍ଚେ ଦେବ ସ୍ଥାନ ।
ପୂର୍ବ ଆନୁକୂଲ୍ୟ   ବାନ୍ଧବେ ବାତ୍ସଲ୍ୟ   ତଦ୍ଧନେ କରେ ସର୍ଜନ,
ଆମ୍ରକୂଟ କଥା   ଉଚ୍ଚାରିବା ବୃଥା   ସେ ତ ସୂଚ୍ଚ ମହଜ୍ଜନ । ୧୭

ପୂର୍ବ= ଗତ (ଅତୀତର) ଆନୁକୂଲ୍ୟ= ଉପକାର  ବାତ୍ସଲ୍ୟ= ଶ୍ରଦ୍ଧା: ତଦ୍ଧନ= କୃପଣ; ସୂଚ୍ଚ= ସୁ (ଭଲକରି)+ ଉଚ୍ଚ; ମହଜ୍ଜନ= ମହତ୍+ଜନ (ବହୁତ ଭଲ ଲୋକ);  ୨୦୧୦୧୦୨୬୦୨୦୫

୧୮

କାନନବେଷ୍ଟିତ   ସେ ଗିରି ପରିତଃ   ରିଦ୍ଧ ଚୂତ ଅକଳନ,
ଶୃଙ୍ଗ ହେବ କୃଷ୍ଣ   ଅଧଃ ସିତବର୍ଣ୍ଣ   ତୁମେ କଲେ ଆରୋହଣ ।
ଦୂରୁ ହେବ ପ୍ରତେ   ସେ ଚୂତ ବନସ୍ତେ   ମାତା ବସୁମତି ସ୍ତନ;
ନିବାରିବ ଶ୍ରାନ୍ତି,   ନିରେଖିବେ କାନ୍ତି   ନିର୍ନିମେଷ ଦ୍ୟୁମିଥୁନ । ୧୮

ପରିତଃ= ଚାରିପାଖେ; ରିଦ୍ଧ ଚୂତ= ପାଚିଲା ଆମ୍ବ; କୂଟ= ଶୃଙ୍ଗ; ସିତ= ଫିକା; ଅକଳନ= ଅମାପ, ବହୁତ; ଚୂତ= ଆମ୍ବ; ଦ୍ୟୁମିଥୁନ= ସ୍ୱର୍ଗ-ଦମ୍ପତି;  ୨୦୧୮୧୦୨୬୦୪୪୫

୧୯

ସେ ଦେଶବାସିନୀ ପଲ୍ଲୀସୀମନ୍ତିନୀ ବନଭୋଜ ଲତାଘରେ,
ରହି ମୁହୂର୍ତ୍ତକ, ଉତ୍ସର୍ଜି ଉଦକ ଆମ୍ବବର୍ତ୍ମେ ଯିବ ଖରେ ।
ଅଗ୍ରେ ବିନ୍ଧ୍ୟମୂଳେ ତୃପ୍ତା ନାରୀ ତୁଲେ ବନ୍ଧୁର ପ୍ରାନ୍ତର ପରେ
ବଜ୍ରଦନ୍ତ କାୟେ ଭକ୍ତି-ଅଙ୍କ ପ୍ରାୟେ ଶୀର୍ଣ୍ଣା ରେବା ଅଗ୍ରସରେ । ୧୯

ଆମ୍ବବର୍ତ୍ମ= ନିଜ ପଥ; ବନ୍ଧୁର= ଅସମାନ; ବଜ୍ରଦନ୍ତ କାୟେ ଭକ୍ତି-ଅଙ୍କ ପ୍ରାୟେ= ଦନ୍ତାହାତୀଦେହରେ ଭକ୍ତିର ଦାଗ ପରି; ଶୀର୍ଣ୍ଣା= ପତଳୀ, ଦୁର୍ବଳୀ; ଅଗ୍ରସରେ= ଆଗେଇ ଚାଲିଛି;

୨୦

ତେଜି ବର୍ଷାଜଳ ଲାଗିଲେ ଦୁର୍ବଳ ପିଇ ନେବ ରେବା ନୀର:
ଗଜସ୍ନାନ-ଖେଳେ ସୁଗନ୍ଧିତ ଜଳେ, ଜମ୍ବୁବିଘ୍ନ ଫଳେ ଧୀର ।
ବର୍ଦ୍ଧିତ ଭାରକେ ତହୁଁ ଅଭ୍ରଲୋକେ ଚଳିଯିବ ଧୀରତାରେ,
ଏ ଜଗତେ ନିଃସ୍ୱ ସର୍ବଦା ଉଶ୍ୱାସ, ଭାରି ପୂର୍ଣ୍ଣ-ଅନ୍ତଃସାରେ । ୨୦

ଗଜସ୍ନାନ-ଖେଳେ= ହାତୀମାନଙ୍କ ଗାଧୁଆ ବେଳର କୌତୁକ ଜନିତ; ଜମ୍ବୁବିଘ୍ନ= ଜାମୁକୋଳି ବଣର ବାଧା; ଭାରକ= ଓଜନ; ଅଭ୍ରଲୋକ= ଆକାଶ; ୨୦୧୮୧୦୨୭୦୫୦୫

୨୧

କେଶର ଖଚିତ ଧୂସର-ହରିତ ଅର୍ଦ୍ଧମୁକ୍ତ ନୀପ ଦେଖି,
ସଦ୍ୟ ଆବିର୍ଭୂତ ଆର୍ଦ୍ରସ୍ଥଳୋଦ୍ଭୂତ କନ୍ଦଳୀ ଫଳକ ଚାଖି,
ଆହରି ବନରେ ନବପର୍ଜନ୍ୟରେ ମାଟି ଥିବ ଗନ୍ଧ ସିଞ୍ଚି,
ହସ୍ତୀ ହରିଣକ ଷଟ୍ପଦ ଚାତକ ପଥେ ଦେବେ ପଥ ସୂଚୀ । ୨୧

ନୀପ= ସ୍ଥଳକଦମ୍ବ; କନ୍ଦଳୀ= ଭୂଇଁକଦଳୀ; ପର୍ଜନ୍ୟ= ବର୍ଷା; ଷଟ୍ପଦ= ମହୁମାଛି;

୨୨

ବୃଷ୍ଟିବିନ୍ଦୁପାୟୀ ଚାତକଙ୍କୁ ଧ୍ୟାୟି ଦେଖୁଥିବେ ପୁଂସ ଜନେ,
ଦର୍ଶାଇ ବଲ୍ଲଭେ ନଭେ ସରୋସ୍ୱବେ ଗୋଟିଗୋଟି ସଂକେତନେ ।
ତୁମରି ଏଲବେ ପ୍ରଭୀତା ବଲ୍ଲଭେ କରିନେବେ ଆଲିଙ୍ଗନ;
ଲଭି ସେ ଆଶ୍ଳେଷ ତୁମ୍ଭକୁ ବିଶେଷ ଶ୍ରଦ୍ଧା ଦେବେ ସିଦ୍ଧ ଜନ । ୨୨

ପାୟୀ= ପାନକାରୀ; ଧ୍ୟାୟି= ଧ୍ୟାନ କରି, ଚାହିଁଚାହିଁ; ପୁଂସ= ପୁରୁଷ; ବଲ୍ଲଭେ= ବଲ୍ଲଭା (ପ୍ରିୟା)କୁ, ପଛଥର ବଲ୍ଲଭ (ପ୍ରିୟ)କୁ; ସରୋସ୍ୱବ= ବକପକ୍ଷୀ; ଏଲବ= ଗର୍ଜନ; ପ୍ରଭୀତା= ବିଶେଷ ଭୟାତୁରା (ପ୍ରେମିକାଗଣ); ଆଶ୍ଳେଷ= ଆଲିଙ୍ଗନ; ୨୦୧୮୧୦୨୮୦୧୧୫

*୨୩*

ତୁମେ ଚାହୁଁଥିବ ଚଞ୍ଚଳ ଚଳିବ ବିହ୍ୱଳା ମୋ ପ୍ରିୟା ପାଶେ,
ପ୍ରତି ପର୍ବତକେ ବିଚିତ୍ରପତ୍ତ୍ରକେ ସମ୍ଭାଷିବେ ହର୍ଷୋଲ୍ଲାସେ,
ଗିରି କୁନ୍ଦକନ୍ଦେ ସୁଗନ୍ଧ ଆନନ୍ଦେ ଅମ୍ବକେ ଉଦକ ଭରି;
ଗାଇ ଉଚ୍ଚଗଳେ ମେଲାଣି କୌଶଳେ ଘେନି ପଥ ନେବ ଧରି । ୨୩

ପର୍ବତକ= ପର୍ବତ; ବିଚିତ୍ରପତ୍ତ୍ରକ= ମୟୂର; ସମ୍ଭାଷଣ= ସ୍ୱାଗତଭାଷଣ; କୁନ୍ଦ କନ୍ଦ= ମଲ୍ଲୀ ଗହଳି; ଅମ୍ବକ= ଆଖି; ଉଦକ= ପାଣି;
୨୦୧୮୧୦୨୮୦୪୧୮

୨୪

ଦଶାର୍ଣ୍ଣ ରାଷ୍ଟ୍ରକେ ଶ୍ଳେଷ୍ମଘ୍ନା ବେଷ୍ଟକେ ବର୍ଣ୍ଣାଳସ ଉପବନ;
ଉଦକ ସିଞ୍ଚନେ ହେବ ଉପବନେ ପର୍ଣ୍ଣ, ଜମ୍ବୁ ଅଙ୍କୁରଣ ॥
ପଥଳ ପାରୁଶେ ବତ୍ସଳ ବାୟସେ ନବ-ନୀଡ଼େ ଦେବେ ରବ,
କେତେକ ଦିବସ ବିଶ୍ରମିବେ ହଂସ ସାଜି ସେ ଦେଶ ବାନ୍ଧବ । ୨୪

ଦଶାର୍ଣ୍ଣ= ଗୋଟିଏ ଦେଶର ନାମ; ଶ୍ଳେଷ୍ମଘ୍ନା= କେତକୀ; ବେଷ୍ଟକ= ବାଡ; ବର୍ଣ୍ଣାଳସ= ବିବର୍ଣ୍ଣ (ବର୍ଷା ଅଭାବରେ ସବୁଜିମା ନ ଥିବାରୁ); ଉଦକ= ପାଣି, ଜଳ; ପର୍ଣ୍ଣ= ପତ୍ର; ଜମ୍ବୁ=ଜାମୁକୋଳି; ପଥଳ= ରାସ୍ତା; ବତ୍ସଳ ବାୟସେ= loving crows; ବାନ୍ଧବ= ବନ୍ଧୁବାସିଆ;
୨୦୧୮୧୦୨୯୦୨୧୦

*୨୫*

ଦଶାର୍ଣ୍ଣର ନର- ପତିର ନଗର ବିଦିଶା ପ୍ରଥିତା ଅତି,
ତହିଁ ସୁମଧୁରା କାମନା ବିଧୁରା ବେତ୍ରବତୀ ସ୍ରୋତସ୍ୱତୀ ।
ତା ନୀର ତରଙ୍ଗେ ପ୍ରତୀତ ଭ୍ରୂଭଙ୍ଗେ ଥିବ ସେ କାମିନୀ ପରି,
ତୁମେ ଶ୍ରମଫଳ ଲଭିବ ତତ୍କାଳ ସେ ଅଧର ପାନ କରି । ୨୫

ନରପତିର ନଗର= ରାଜଧାନୀ; ପ୍ରଥିତ= ପ୍ରଖ୍ୟାତ; ବେତ୍ରବତୀ ସ୍ରୋତସ୍ୱତୀ= ବେତ୍ରବଳବତୀ ନାମ୍ନୀ ନଦୀ; ପ୍ରତୀତ= (ସେପରି) ଜଣା ପଡୁଥିବା; ୨୦୧୮୧୦୨୯୧୭୧୫

୨୬

ବିଦିଶା ଉପସ୍ଥେ ନୀଚଗିରି-ପ୍ରସ୍ଥେ କରି ନେବ ନିବସନ,
ଦୋଳି ତୁମ ସଙ୍ଗେ ଅଭ୍ରପୁଷ୍ପ ଅଙ୍ଗେ, ରଙ୍ଗେ ହେବ ରୋମାଞ୍ଚନ ।
ସେ ଗିରିକନ୍ଦରେ ପ୍ରେମସୁଗନ୍ଧରେ ଝର୍ଝରା ସୁନ୍ଦରୀଗଣ,
ତରୁଣେ ଆକର୍ଷି ଦିଅନ୍ତି ପ୍ରକାଶି ପ୍ରତିଚ୍ଛନ୍ନ ଉଦ୍ଦୀପନ । ୨୬

ଉପସ୍ଥ= ପାଖ; ନୀଚ= ଏକ ପର୍ବତର ନାମ; ପ୍ରସ୍ଥ= ବିସ୍ତାର, spread; ଅଭ୍ରପୁଷ୍ପ= କଦମ୍ବଫୁଲ; ନିବସନ= ବିଶ୍ରାମ; ଝର୍ଝରା= ବାରାଙ୍ଗନା; ପ୍ରତିଚ୍ଛନ୍ନ= ଲୁକ୍କାୟିତ; ୨୦୧୮୧୦୩୦୧୦୪୦

୨୭

ଶ୍ରାନ୍ତି ବିନଶନେ କନ୍ଦର କାନନେ ଦେଖିବ ଗଗନଧ୍ୱଜ !
ଯୁଇବନେ ଶ୍ରାନ୍ତା ପୁଷ୍ପଲାବୀକାନ୍ତା, ଶୁଷ୍କପଦ୍ମ କର୍ଣ୍ଣସଜ ।
କପୋଳ ଫଳକ ଭରା ଘର୍ମସ୍ତୋକ ପୋଛୁଥିବେ ଥରେ ଥରେ!
ଦେଇ ସଞ୍ଜୀବନୀ ଯିବ ଉଜ୍ଜୟିନୀ ବିଦିଶାରୁ ଦିଶାନ୍ତରେ । ୨୭

ବିନଶନ= ଶେଷ; କନ୍ଦର କାନନ= ଉପତ୍ୟକାର ଉପବନ; ଗଗନଧ୍ୱଜ= ମେଘ; ପୁଷ୍ପଲାବୀକାନ୍ତା= ପୁଷ୍ପ ଚୟନକାରିଣୀ ନାରୀ: ଘର୍ମସ୍ତୋକ= ଝାଳ ବିନ୍ଦୁ; ଦିଶାନ୍ତରେ= ଯାତ୍ରାର ଦିଗ ବଦଳେଇ; ୨୦୧୮୧୦୩୦୧୮୫୦

୨୮

ହେଉ ବ୍ୟାକୁଞ୍ଚିତ ପଥ ପଶ୍ଚିମସ୍ଥ ନ ଉପେକ୍ଷି ନାତି ଦୂରେ
ହେବ ପରିଚିତ ପ୍ରାସାଦପୂରିତ ରମ୍ୟ ଉଜ୍ଜୟିନୀପୁରେ ।
ସେ ପୁର ଅବଳା କଟାକ୍ଷ ଚପଳା ନ ଦେଖିଛି ଯେଉଁ ଜନ,
ସେହି ବୀତସ୍ପୃହ ଭୋଗେ ନିଃସନ୍ଦେହ ଅତିକାୟ ପ୍ରବଞ୍ଚନ । ୨୮

ବ୍ୟାକୁଞ୍ଚିତ= ବକ୍ର, deflected; ଅତିକାୟ= ଅତିବଡ; ୨୦୧୮୧୦୩୦୨୨୩୦

୨୯

ଉଜ୍ଜୟିନୀ ପଥେ କୂଜନୀ ସଂଗତେ ନିର୍ବିନ୍ଧ୍ୟା ଗିରିପୁତ୍ରିକା,
ପକ୍ଷୀପଙ୍କ୍ତି ତାର କଟି ତନ୍ଦ୍ରାହାର, ଆବର୍ତ୍ତ ନାଭିରନ୍ଧ୍ରିକା।
ତେଜି ବିମୁଖତା ନିଶ୍ଚେ କରିବ ତା ପ୍ରେମରସ ଆସ୍ୱାଦନ,
କାମିନୀ କୁମାରୀ କରନ୍ତି ଏ ପରି ରସବତ୍ତା ପ୍ରଦର୍ଶନ । ୨୯

ନିର୍ବିନ୍ଧ୍ୟା= ଗିରିପୁତ୍ରିକା= ପର୍ବତକନ୍ୟା ନଦୀ; ଆବର୍ତ୍ତ ନାଭିରନ୍ଧ୍ରିକା= ଭଉଁରୀ (ସେ ନଦୀର) ନାଭିଗର୍ତ୍ତ; ୨୦୧୮୧୧୦୧-୦୮୫୦

୩୦

ସିନ୍ଧୁ ଅଭିହିତା ନିର୍ବିନ୍ଧ୍ୟା ଧାବିତା ବେଣୀରୂପା ସ୍ୱଳ୍ପନୀରା,
ତୀରତରୁବର ତୃଷ୍ଟ ପର୍ଣ୍ଣେ ତାର ନଷ୍ଟବର୍ଣ୍ଣ ଜଳଧାରା ।
ଢାଳି ବର୍ଷାବାରି ଆହେ ଅମ୍ବୁଧାରୀ ଦେବ ତାକୁ ନବପ୍ରାଣ,
ସନ୍ନା ବିରହିଣୀ ସାଜିବ ପ୍ଳାବିନୀ, କର ତାର ପରିତ୍ରାଣ । ୩୦

ଅଭିହିତା= କୁହା ଯାଉଥିବା; ତୃଷ୍ଟ= ଶୁଷ୍କ; ତୀରତରୁବର ପର୍ଣ୍ଣ= ତଟସ୍ଥ ଗଛର ପତ୍ର; ନଷ୍ଟବର୍ଣ୍ଣ= ମଳିନ; ସନ୍ନ= ଦୁଃଖି, sad;
୨୦୧୮୧୧୦୧୧୫୧୫

୩୧

ଯିବ ଅମ୍ବୁଧର ଅବନ୍ତୀନଗର ବିଭବପ୍ରଭବ ଦେଶେ
ଯହିଁ ବୃଦ୍ଧଜନ ଧରାବତରଣ ପଥେ ପୁଣ୍ୟଫଳ ଶେଷେ
ସ୍ମରନ୍ତି କଥନେ ସେ ଦେଶ ରାଜନେ ଉଦୟନେ ପୁରାତନ,
ତାଙ୍କ ସନ୍ନିଧାନେ ଲାଗେ ସେହିସ୍ଥାନେ ଦିବ୍ୟଧାମ ଭୂପତନ । ୩୧

ବିଭବପ୍ରଭବ= ବିଭବ (ଧନ) ବଳ (ପ୍ରଭବ) ଯାହାର; ଶିପ୍ରା= ସେଠା ନଦୀର ନାମ;  ୨୦୧୮୧୧୦୧୨୨୨୫

୩୨

ଶିପ୍ରାଜଳସ୍ନାତ    ଉଜ୍ଜୟିନୀବାତ    ପ୍ରଭାତର ଶିହରଣ,
ହଂସକଳସଖା    ପଦ୍ମରେଣୁମଖା    ଚନ୍ଦନର ବିତରଣ;
ଶୀକରପୂରିତ    ସୁରଭିସେବିତ    ପ୍ରୀତିକର ଶ୍ରାନ୍ତିହର,
ପ୍ରଣୟପ୍ରୟାସେ    ପ୍ରଣୟିନୀ ପାଶେ    ପ୍ରେମୀ ଯଥା ଚାଟୁକାର ।  ୩୨

ହଂସକଳସଖା= ହଂସମାନଙ୍କ କଳରବର ପ୍ରୋତ୍ସାହକ; ପ୍ରଣୟ= ମିଳନ, romance;

୩୩

ନଗର ବିପଣି    ମରକତମଣି    ମାଣିକ୍ୟ ରତନେ ଭରା,
ଶଙ୍ଖ ମୁକ୍ତା ହାର    ଜ୍ୟୋତି ଚମତ୍କାର    ଶଷ୍ପଶ୍ୟାମ ରଶ୍ମି ଝରା ।
ହୀରା ନୀଳା ମୋତି    ସାଗର ସଂପତ୍ତି    ନାନା ବର୍ଣ୍ଣ ଖଣ୍ଡୋପଳ;
ଅଚଳାସମ୍ବଳ    ସେ ଜନ୍ୟେ ପ୍ରବଳ,    ଜଳଧିରେ ଖାଲି ଜଳ ।  ୩୩

ବିପଣି= ହାଟ; ଶଷ୍ପଶ୍ୟାମ= କଅଁଳ ଘାସପରି ଶ୍ଯାମଳ; ଖଣ୍ଡୋପଳ= (ଦୁର୍ମୂଲ୍ୟ) ପଥର ଖଣ୍ଡ; ଅଚଳାସମ୍ବଳ= ପୃଥିବୀର ସବୁ ସଂପତ୍ତି; ଜନ୍ୟ= ହାଟ; ଜଳଧିରେ ଖାଲି ଜଳ= ସତେ କି ସମୁଦ୍ରର ସବୁ ରତ୍ନ ଏ ହାଟକୁ ଚାଲି ଆସିଛି;    ୨୦୧୦୧୧୦୩୦୧୩୦

. ୩୪

ବନ୍ଧୁ-ଅଭ୍ୟାଗତେ    ଆହ୍ଲାଦିତ ଚିତ୍ତେ    କହନ୍ତି ଅଭିଜ୍ଞ ଜନ,
ପ୍ରଦ୍ୟୋତରାଜନ-    ଦୁହିତା ହରଣ    କରିଥିଲା ଉଦୟନ ।
ଭୂପ ପ୍ରଦ୍ୟୋତକ    ରାଜ୍ୟେ ଥିଲା ଏକ    ସୁବର୍ଣ୍ଣର ତାଳବନ;
ତାର ମତ୍ତକରୀ    କଲା ନଳଗିରି    ବନ୍ଧା ସ୍ତମ୍ଭ ଉତ୍ପାଟନ । ୩୪

ପ୍ରଦ୍ୟୋତରାଜନ-ଦୁହିତା= ପ୍ରଦ୍ୟୋତକନ୍ୟା ବାସବଦତ୍ତା; ମତ୍ତକରୀ= ପାଗଳ ହାତୀ; ନଳଗିରି= ସେ ହାତୀର ନାମ;
୨୦୧୮୧୧୦୩୦୩୨୫

୩୫

ଲମ୍ବିତକୁନ୍ତଳା    ନିଗମ-ଅବଳା    ଜଳା ପାଶେ ପ୍ରସାଧନେ
ପ୍ରକ୍ଷେପିବେ କେଶ-    ଉତ୍ପଳା ବିଶେଷ,    ପ୍ରୀତ ହେବ ଆସ୍ୱାଦନେ ।
ତୁମ୍ଭ ସୁସ୍ୱାଗତ    ହେତୁ ଲାସ୍ୟରତ    ଥିବେ ଗୃହକେକୀଗଣ,
ଅଳତା-ବୋଳିତା    ଚପଳା ବନିତା    ଦେଖି ଯିବ ସନ୍ତାପନ ।  ୩୫

ଲମ୍ବିତକୁନ୍ତଳା ଲାସ୍ୟ= ନାଚ; ଗୃହକେକୀ= ଗୃହ-ପାଳିତ ମୟୂର; ସନ୍ତାପନ= କ୍ଲେଶ;    ୨୦୧୮୧୧୦୩୨୦୨୦

୩୬

ଶିବକଣ୍ଠବର୍ଣ୍ଣେ    ଭ୍ରମ ସୃଜି ମନେ    ପ୍ରମଥଙ୍କ ପ୍ରେମ ପାଇ
ତ୍ରିପୁରବନ୍ଦିତ    ଚଣ୍ଡୀଶ୍ୱର ତୀର୍ଥ    ତ୍ୱରିତ ଦେଖିବ ଯାଇ ।
ଗନ୍ଧବତୀଝରା    ସମୀରେ ସେ ଧରା    ଉପବନ ଦୋଳାୟିତ,
କୁବଳରେଣୁ-ବୋଳା    ଜଳଦ୍ୟୂତବାଳା    ପ୍ରସାଧନେ ସୁଗନ୍ଧିତ ।  ୩୬

ପ୍ରମଥ= ଶିବପୂଜନରେ ନୃତ୍ୟଗୀତରତ ସେବକ; ଗନ୍ଧବତୀ= ସେଠା ନଦୀର ନାମ; କୁବ= କଇଁ; ଜଳ-ଦ୍ୟୂତ= ଜଳକ୍ରୀଡା; ୨୦୧୮୧୧୦୪୧୩୦୦

୩୭

ଉସ୍ତୁର ଅପର     ପ୍ରହରେ ଖଚର !     ବିରାଜିଲେ ପୁଣ୍ୟସ୍ଥଳେ
ନ ତେଜିବ ସ୍ଥାନ     ଯେ ଯାଏ ତପନ     ଚଳି ନାହିଁ ଅସ୍ତାଚଳେ ।
ମହାକାଳଧାମେ     ପ୍ରଦୋଷ ଆଗମେ     ପଟହର ନିନାଦନେ
ମିଶାଅ ଡୁମ୍ବର     ଗମ୍ଭୀର ନିଃସ୍ୱର     ପୂର୍ଣ୍ଣ ପୁଣ୍ୟ-ଉପାର୍ଜନେ ।  ୩୭

ଉସ୍ତୁର ଅପର= ସନ୍ଧ୍ୟା ଛଡା; ଖଚର= ମେଘ; ପଟହ= ମୃଦଙ୍ଗ;     ୨୦୧୮୧୧୦୬୦୧୩୮

୩୮

ଘୁଙ୍ଗୁର-କମରେ     ଶ୍ରୀକର ଚାମରେ     ନୃତ୍ୟାଙ୍ଗନା ବିଳାସିନୀ
ଶ୍ରାନ୍ତ ବିଗ୍ରହରେ     ଥିବେ ଆଗ୍ରହରେ     ନୀରବିନ୍ଦୁ ଆଶାୟିନୀ;
ସନ୍ଧ୍ୟା ଆଗମନେ     ତୁମ୍ଭ ସୁସ୍ପର୍ଶନେ     ନଖକ୍ଷତ ଜ୍ୱାଳା ହାରି
ଭ୍ରମର ଯେସନେ     କଟାକ୍ଷ କ୍ଷେପଣେ     ନିରେଖିବେ ତୃପ୍ତା ନାରୀ ।  ୩୮

ବିଗ୍ରହ= ଶରୀର;

୩୯

ତହୁଁ ସନ୍ଧ୍ୟାଗତେ     ତାଣ୍ଡବ ସଙ୍ଗତେ     ଗଜାସୁରବଧ ସ୍ମରି,
ରକ୍ତାଭ ବାରଣ-     ଚର୍ମ ଉପରାଣ     ଲୋଡିବେ ଦୁର୍ବିଷ ହରି;
ରକ୍ତବର୍ଣ୍ଣ ଧରି     ଭୁଜବନୋପରି     ବ୍ୟାପି ଯିବ ତୁମେ ଘନ,
କ୍ଷାନ୍ତ ହେଲେ ହରି     ଶୈଳଜା ଈଶ୍ୱରୀ     ଆଶ୍ୱସ୍ତ କରିବେ ମନ ।  ୩୯

ଗଜାସୁରବଧ= ଏ ଘଟଣା କରି ଗଜର ରକ୍ତାକ୍ତ ଚର୍ମ ଧରି ଶିବ ତାଣ୍ଡବ ନୃତ୍ୟ କରିଥିଲେ; ବାରଣ= ହାତୀ; ଉପରାଣ= ଚାଦର;
୨୦୧୮୧୧୦୭୦୫୦୮

୪୦

ତହିଁ ରାଜପଥେ     ରଜନୀ ଆଗତେ     ସୂଚୀଭେଦ୍ୟ ଅନ୍ଧକାରେ
ଚଳିବେ ଯୋଷିତା,     ହେବେ ଉପଗତା     ପ୍ରିୟ ପାଶେ ଅଭିସାରେ ।
ଦର୍ଶାଇବ ପଥ     ପ୍ରସ୍ତରକଷିତ     ସୁବର୍ଣ୍ଣର ରେଖାଙ୍କନେ,
ନ ସୃଜିବ ଭୀତି     ଉପୁଜାଇ ପ୍ରୀତି     ଘୋର ବଜ୍ର ନିନାଦନେ ।  ୪୦

ପ୍ରସ୍ତରକଷିତ= (କଷଟି) ପଥର ପରୀକ୍ଷିତ; ସୁବର୍ଣ୍ଣର ରେଖାଙ୍କନ = ବିଜୁଳି;     ୨୦୧୮୧୧୦୭୦୫୦୫

୪୧

ପାହିଗଲେ ରାତି ଖୋଜି ଉଚ୍ଚ ଅତି ସୌଧଶିଖ-ପାରାବତ,
ପତ୍ନୀ ସୌଦାମିନୀ ସଙ୍ଗତେ ଯାମିନୀ କରିଦେବ ଅତିଗତ ।
ତତ୍ପର ପ୍ରଭାତେ ଯିବ ଧାର୍ଯ୍ୟ ପଥେ ନ କରି କାଳକ୍ଷେପଣ,
ବନ୍ଧୁମିତ୍ର ହିତେ ପ୍ରତିଶ୍ରୁତ କୃତ୍ୟେ କ୍ଷିପ୍ରହସ୍ତ ସାଧୁ ଜନ । ୪୧

ପାରାବତ= ପାରାଭାଡି; ୨୦୧୮୧୧୦୮୧୧୫୫

୪୨

ଆସିଲେ ଉଷସୀ ବିକ୍ଷତା ପ୍ରେୟସୀ ଆନନ୍ଦୁ ଲୋତକ ବାରି
ମୋଚନ୍ତି ପ୍ରେମିକ ସଞ୍ଚାଳି କରକ ଯତନେ କଷଣ ହାରି:
ପଦ୍ମିନୀ କପୋଳେ ରଶ୍ମିଭୁଜ ବଳେ ଶିଶିର ବିନ୍ଦୁ ମୋଚନ,
କରିବେ ଭାସ୍କର । କ୍ରୋଧ ଜରଜର ହେବେ କଲେ ବାଧା ଦାନ । ୪୨

କରକ= ପାପୁଲି; ରଶ୍ମିଭୁଜ= (ସୂର୍ଯ୍ୟଙ୍କ କିରଣ ରୂପକ ବାହୁ); ୨୦୧୮୧୧୦୯୦୧୩୦

୪୩

ଶୁଦ୍ଧ ଚିତ୍ତ ସମ ସ୍ୱଚ୍ଛ ଅନୁପମ, ଗମ୍ଭୀରା ଉଦକ ଧାରା;
ଆତ୍ମାରୂପ ତୁମ୍ଭ ଛାୟା ପ୍ରତିବିମ୍ବ ଧରି ହେବ ମନୋହାରା ।
ଶଫରୀ ଉଦ୍ବର୍ତ୍ତେ ଶୁକ୍ଳ କୁବ ପ୍ରତେ ଅନୁରକ୍ତ ନେତ୍ର ତୋଳି
ନିରେଖିବ ଧାରା, ତେଜି ସେ ଗମ୍ଭୀରା ସହଜେ ନ ହେବ ଚଳି ! ୪୩

ଗମ୍ଭୀରା= ଗମ୍ଭୀରା ନଦୀ; ଶଫରୀ ଉଦ୍ବର୍ତ୍ତ= କରାଣ୍ଡି ମାଛର ଉପରଡିଆଁ; ଶୁକ୍ଳ କୁବ ପ୍ରତେ= ଧଳାକଇଁ ପରି ଲାଗୁଥିବା; ଅନୁରକ୍ତ= ଅନୁରାଗପୂର୍ଣ୍ଣ; ୨୦୧୮୧୧୦୯୦୫୦୦

୪୪

ଗମ୍ଭୀରା ଦି ଧାରେ ବେତସ ଲତାରେ ସ୍ରୋତ ଅର୍ଦ୍ଧ-ଦରଶନେ;
ଲାଗେ ନୀଳବର୍ଣ୍ଣେ ସଲିଳ ବସନ କାହା ହସ୍ତ-ଆସଞ୍ଜନେ !
ତଟରୂପ କଟୀ- ଦେଖୁ ଗଲେ ହଟି ସେହି ବସ୍ତ୍ର ତୁମ ହାତେ,
ବିବସନା ନାରୀ ଦେଖି ବାର୍ତ୍ତାଧାରୀ ! ବିଳମ୍ବ ନ କର ପଥେ । ୪୪

ଆସଞ୍ଜନ= ଆଲମ୍ବ, hook ୨୦୧୮୧୧୦୯୧୦୩୨

୪୫

ଦେବଗିରି କୋଳେ ଅନିଳ ହିନ୍ଦୋଳେ ଚଳି ଯିବ ଧୀରେଧୀରେ,
ତପ୍ତ ବସୁନ୍ଧରା ହେବ ଆମ୍ରହରା ସୁବାସିତ ଶୀତ ନୀରେ ।
ହସ୍ତୀ ନାଗାଞ୍ଚନେ ସୁରଭି ସିଞ୍ଚନେ ଧରା ହେବ ନିନାଦିତ,
ତୁମ୍ଭ ବୃଷ୍ଟିଜଳେ ହେବ ସେ ଅଞ୍ଚଳେ ଉଦୁମ୍ବର ପରିଣତ । ୪୫

ଅନିଳହିନ୍ଦୋଳ= ପବନଦୋଳି; ନାଗାଞ୍ଚନ= ଶୁଣ୍ଢ; ଉଦୁମ୍ବର= ଡିମ୍ବିରି ଫଳ / ଗଛ; ପରିଣତ= ପକ୍ୱ;

୪୬

ଦୈବ ସେନାପତି ଶଙ୍କର-ବିଭୂତି କାର୍ତ୍ତିକେୟ ଅଗ୍ନିଯୁତ
ଦେବଗିରି ପରେ ବାସ ନିରନ୍ତରେ ମନ୍ଦସାନମୁଖୋଦ୍ଭୂତ ।
ତପ୍ତ ଅଂଶୁମାଳୀ କିରଣଠୁ ବଳି ତେଜୋଦୀପ୍ତ ରୂପରେଖ !
ପୁଷ୍ପାକାର କାୟେ ନଭ-ଗଙ୍ଗା ତୋୟେ କରିବ ତା ଅଭିଷେକ । ୪୬

ମନ୍ଦସାନ= ଅଗ୍ନି; ନଭ-ଗଙ୍ଗା= ସ୍ୱର୍ଗଗଙ୍ଗା; ତୋୟ= ଜଳ; ୨୦୧୮୧୧୧୭

୪୭

ଭୂତଳଭ୍ରଂଶିତ ବର୍ଣ୍ଣବିଭାସିତ ଭୁଜଗାରି ପୁଚ୍ଛ ତୋଳି
ସାଜି କର୍ଣ୍ଣ ବେନି ଥିବେ ମା ଭବାନୀ ବାତ୍ସଲ୍ୟ ମମତା ବୋଳି;
ଶିବଶିରସ୍ଥିତ ରଶ୍ମି ଉଦ୍ଭାସିତ ଶିଖୀ ଅଭିଷେକ କରି,
ଗିରିକନ୍ଦଦ୍ୱାରେ ଦେବ ଦୀର୍ଘୋଦ୍ଘାରେ କେକୀକୁଳେ ନୃତ୍ୟ ଭରି । ୪୭

ଭ୍ରଂଶିତ=ଖସିପଡିଥିବା; ଭୁଜଗାରି, ଶିଖୀ= ମୟୂର; ଦୀର୍ଘୋଦ୍ଘାର= ଦୀର୍ଘ ଗର୍ଜନ; ୨୦୧୮୧୧୧୭

୪୮

ତେଜି ସେ ଦୈବତ ଶରବଣଜାତ, ମାର୍ଗେ ଯିବ ଅଗ୍ରସରି
ସିଦ୍ଧ ଦ୍ୱୟୀଗଣେ ଜବିତ ରକ୍ଷଣେ ବର୍ଜିତ ପ୍ରାଧ୍ୱନେ ବରି ।
ବାଢିଦେବ ନତି ଦେଖି ଚର୍ମଣ୍ୱତୀ ରନ୍ତିଦେବ-କୀର୍ତ୍ତିମତୀ
ଗୋମେଧ-ସୁଜାତା, ଗାଭୀରକ୍ତସ୍ନାତା ଧରାଗତା ସ୍ରୋତସ୍ୱତୀ । ୪୮

ଜବିତ ରକ୍ଷିତ କରି= ବୀଣାକୁ (ବର୍ଷାରୁ) ରକ୍ଷାକରି; = ଦ୍ୱୟୀଗଣେ ବର୍ଜିତ ପ୍ରାଧ୍ୱନେ= ଯୁଗଳ (couple)ମାନେ ଛାଡି ଦେଇଥିବା ରାସ୍ତାରେ; ଚର୍ମଣ୍ୱତୀ= ନଦୀ ବିଶେଷ; ଗାଭୀରକ୍ତସ୍ନାତା= (ପୂର୍ବେ ସେଠି ଗୋମେଧ ଯଜ୍ଞ ହେଇ ଥିବାରୁ); ଧରାଗତା= ପୃଥିବୀକୁ (ଓହ୍ଲେଇ) ଆସିଥିବା; ୨୦୧୮୧୧୧୮୦୨୪୫

୪୯

କୃଷ୍ଣ ଶାର୍ଙ୍ଗଧନୁ ସମ କୃଷ୍ଣତନୁ ! ତୁମ୍ଭ ତୃଷ୍ଣା ପ୍ରଶମନ
ଚର୍ମଣ୍ୱତୀ ଜଳେ କଲେ ନଭସ୍ଥଳେ ନିରେଖିବେ ସିଦ୍ଧଜନ ।
ଦୂରୁ ସ୍ରୋତବହା ପ୍ରଶସ୍ତବିଗ୍ରହା ପ୍ରତେ ହେବ ସୂକ୍ଷ୍ମ ଗାର,
ତୁମ୍ଭ ପ୍ରତ୍ୟାସନ୍ନେ ଧରଣୀ ଅଙ୍ଗନେ ଶିତିରତ୍ନ-ମୁକ୍ତାହାର । ୪୯

କୃଷ୍ଣ ଶାର୍ଙ୍ଗଧନୁ= ଶାର୍ଙ୍ଗ ନାମକ ଧନୁ ଧାରଣ କରୁଥିବା କୃଷ୍ଣ;

୫୦

ତାକୁ ଅତିକ୍ରମି ଭ୍ରୂଲତାବିଭ୍ରମୀ ଦଶପୁରବଧୂ ଦେଖି
ତାଙ୍କ ସ୍ନିଗ୍ଧନେତ୍ରେ ତୁମ୍ଭ ମୁଗ୍ଧ ଚିତ୍ରେ ସ୍ତବ୍ଧ ମନ୍ତ୍ରେ ଦେବ ଲେଖି ।
ଚକିତ ନୟନେ ଚାହିଁବେ ଗଗନେ କୁଳବଧୂ ମୁକ୍ତଡୋଳେ,
କୃଷ୍ଣଶୁକ୍ଳ ବର୍ଣ୍ଣ, ମଧୁପ ଯେସନ ଅନୁଚର କୁନ୍ଦଦଳେ । ୫୦

ନେତ୍ରେ= ଆଖିରେ; ଚିତ୍ରେ= ଛବିକୁ; କୃଷ୍ଣଶୁକ୍ଳ ବର୍ଣ୍ଣ= ଆଖି ଡୋଳାର ଦୁଇ ବର୍ଣ୍ଣ; କୁନ୍ଦଦଳ= ମଲ୍ଲୀଫୁଲ ଗୁଡିକ; ଶିତିରତ୍ନ= ନୀଳା, safire, blue-gem;

୫୧

ଏବେ ବ୍ରହ୍ମାବର୍ତ୍ତ କରି ଛାୟାସ୍ନାତ ଯିବ କୁରୁ-ରଣାଙ୍ଗନେ
ଯହିଁ କ୍ଷାତ୍ରକୀର୍ତ୍ତି ଉପୁଜାଏ ଭୀତି ଯୁଦ୍ଧ ଇତି ସଂସ୍ମରଣେ;
ଯହିଁ ବୃଷ୍ଟିପାତେ ପୁଷ୍କରବେଶାନ୍ତେ କମଳମଳନ ଭଳି,
ଗାଣ୍ଡିବୀ ଅର୍ଜ୍ଜୁନ ଶତଶରେ ତୀକ୍ଷ୍ଣ ଲକ୍ଷେ ରାଜନଙ୍କ ବଳି । ୫୧

ବ୍ରହ୍ମାବର୍ତ୍ତ= ପୁଣ୍ୟଭୂମି, holy land; ପୁଷ୍କର= ହ୍ରଦ; ବେଶାନ୍ତ= ପୋଖରୀ; କମଳ= ପଦ୍ମ; ମଳନ= ମକଚିବା, crushing; ଗାଣ୍ଡିବୀ= ଗାଣ୍ଡିବ ଧନୁ ଧାରଣକାରୀ;

୫୨

କୌରବପାଣ୍ଡବେ ସ୍ନେହେ ସମଭାବେ ଯୁଦ୍ଧନ୍ୟାସୀ ସୀରଧ୍ୱଜ,
ରେବତୀଲୋକିତ ତେଜି ସୁସ୍ୱାଦିତ ପାନକଲେ ଯାହା ତୋଜ,
ସେହି ସ୍ରୋତସ୍ୱତୀ ଦିବ୍ୟା ସରସ୍ୱତୀ ନୀର କଲେ ଆଚମନ,
ଏ ବିଗ୍ରହ ଘନ ! ଥାଉ କୃଷ୍ଣବର୍ଣ୍ଣ, ସ୍ୱଚ୍ଛ ହେବ ଅନ୍ତର୍ମନ । ୫୨

ନ୍ୟାସୀ= ତ୍ୟାଗୀ; ସୀରଧ୍ୱଜ=ବଳରାମଙ୍କ ନାମ; ରେବତୀଲୋକିତ= (ପତ୍ନୀ) ରେବତୀ (ଶ୍ରଦ୍ଧାରେ) ଚାହିଁଥିବା; ତୋଜ= ଜଳ;

୫୩

ଯିବ କନଖଳ ଜାହ୍ନବୀର ଜଳ ଯହିଁ ତା ପାର୍ବ୍ବତ୍ୟ ସ୍ରୋତେ
ପାବଚ୍ଛ ସମାନ ପର୍ବ୍ବତେ ପ୍ରକୀର୍ଣ୍ଣ ସଗରଙ୍କ ସ୍ୱର୍ଗପଥେ
ବକ୍ରଚନ୍ଦ୍ର ଅଙ୍ଗେ ପାର୍ବ୍ବତୀ ଭ୍ରୂଭଙ୍ଗେ ସତେ ଉପହାସ କରି
ଫେନିଳ ହସ୍ତକେ ଶଙ୍କର ମସ୍ତକେ କେଶଗୁଚ୍ଛ ଥିବ ଧରି ! ୫୩

କନଖଳ= ଆଧୁନିକ କନ୍-ଖଲ୍;

୫୪

ଐରାବତ ଭଳି ସମ୍ମୁଖକୁ ଢଳି ଗଲେ ତୁମେ ଗଙ୍ଗା ତୀରେ,
ସିତୋପଳ ସମ ଶୁଦ୍ଧ ଅନୁପମ ପିଇବାକୁ ପୂତ ନୀରେ,
ତୁମ୍ଭ ଛାୟାପାତେ ସେ ପାବନ ସ୍ରୋତେ ବିଚାରିଲେ ହେବ ପ୍ରତେ,
ଅସ୍ଥାନ ପ୍ରୟାଗେ ସୁରସୁତା ସଙ୍ଗେ ସଂଗମ ହେଲା କି ସତେ । ୫୪

ସିତୋପଳ= ସ୍ଫଟିକ; ଅସ୍ଥାନ ପ୍ରୟାଗ= ପ୍ରୟାଗ ପହଞ୍ଚିବାଠୁ ବହୁ ପୂର୍ବରୁ; ସୁରସୁତା= ଯମୁନା;

୫୫

ଯିବ ହିମାଚଳ ଗଙ୍ଗୋତ୍ପତ୍ତି ସ୍ଥଳ ହେମାଳ ଧବଳ ଚୂଳ,
ଯହିଁ କୃଷ୍ଣସାର ନାଭିରୁ ବାହାର ବାସ ଶୈଳେ ଶୈଳେ ଠୁଳ;
ତୁମ୍ଭ ବିଶ୍ରମଣେ ପର୍ବତ ବିଷାଣେ ଶୋଭା ହେବ ଅପରୂପ,
ସତେ ମହେଶ୍ୱର ବୃଷ ଶୃଙ୍ଗ ପର ତୁମ୍ଭେ ନିଷଦ୍ବର ଲେପ । ୫୫

କୃଷ୍ଣସାର= ଏକ ଜାତିର ମୃଗ; ବିଶ୍ରମଣ= ବିଶ୍ରାମ, resting; ବିଷାଣ= (ଗିରି) ଶୃଙ୍ଗ; ବୃଷ ଶୃଙ୍ଗ ପର= ଷଣ୍ଢର ଶିଙ୍ଗ ଉପରେ; ନିଷଦ୍ବର= କାଦୁଅ;

୫୬

ଖର ପ୍ରଭଞ୍ଜନେ ଶାଖା ପ୍ରଘର୍ଷଣେ ବନାଗ୍ନିର ପ୍ରଜ୍ୱଳନେ
ଦେବଦାରୁବନ ହେଲେ ଖିନ୍ନଭିନ୍ନ, ସ୍ଫୁଲିଙ୍ଗର ଉଲ୍କାୟନେ
ଚମରୀ ଗାଭୀର ଦହିଲେ ଶରୀର ଲିଭାଇବ ବୃଷ୍ଟିପାତେ;
ସଜ୍ଜନର ବିତ୍ତ ନିତ୍ୟ ନିୟୋଜିତ ଦୀନ ଦୁଃଖୀଜନ ହିତେ । ୫୬

୫୭

ଶିଳାଶୃଙ୍ଗପରେ ଯେବେ ରୋଷ ଭରେ ଅଷ୍ଟପଦ ମୃଗଗଣ
ଅଙ୍ଗଭଙ୍ଗଭୟ ତେଜି ଦୁଷ୍ଟଚୟ ଆରମ୍ଭିବେ ଆକ୍ରମଣ,
ସବେଗ ଧାବନ, ଶିଙ୍ଗ ପ୍ରଦର୍ଶନ କରିବେ ବୈରତାଭରେ,
ବିଞ୍ଚି ବର୍ଷୋପଳ କରିବ ନିର୍ବଳ ଦୁର୍ଜନେ କେ ଦୟା କରେ ! ୫୭

୫୮

ହିମପ୍ରସ୍ଥତୁଳେ ଯୋଗୀଜନକୁଳେ ସୁପୂଜିତ ଶୈଳକୂଟ
ଶ୍ରୀମହାମହେଶ ଚରଣବିନ୍ୟାସ ବଳେ ପୁଣ୍ୟ ପରିସ୍ଫୁଟ;
ଶ୍ରଦ୍ଧାଭକ୍ତିପୂର୍ଣ୍ଣ ସେ ପଦଦର୍ଶନ କରେ ପାପତାପହୀନ,
ଆଚରି ବିନୟ ସେ ଶୈଳନିଚୟ କରି ନେବ ପ୍ରଦକ୍ଷିଣ । ୫୮

୫୯

ତହିଁ ଶୂନ୍ୟଗର୍ଭ କୀଚକ ସଗର୍ବ ପବନର ପ୍ରବାହରେ
ପ୍ରଭୁ ପୁରଞ୍ଜୟ ତ୍ରିପୁରବିଜୟ ସୂକ୍ତ ଗାଏ ମୁକ୍ତସ୍ୱରେ ।
ମିଳି ତାହା ସହ ହେ ଅମ୍ବୁନିବହ ଶୂନ୍ୟଗର୍ଭ ଗିରିକନ୍ଦେ
ମଧୁର ଗର୍ଜନେ ସେ ସ୍ନିଗ୍ଧ ଗୁଞ୍ଜନେ ପୂର୍ଣ୍ଣ କର ମହାନନ୍ଦେ ।। ୫୯

କୀଚକ= ଫମ୍ପା ବାଉଁଶ; ପୁରଞ୍ଜୟ= ଭଗବାନ୍ ଶିବ; ଅମ୍ବୁନିବହ= ମେଘ;

୬୦

ଅଦ୍ରିପତିପଦେ    ସୁଷମାସମ୍ପଦେ    କରି ସାରି ଆଲୋକନ,
ସରୋବରପଥୀ    ହଂସେ କରି ସାଥୀ    ଉତ୍ତରେ ଚଳିବ ଘନ !
ପର୍ଶୁରାମଶରେ    ସୃଷ୍ଟ କ୍ରୌଞ୍ଚରନ୍ଧ୍ରେ    ଯିବ ତନୁ ବକ୍ର କରି
ବାମନାବତାରେ    ବଳିର ମଥାରେ    ତୃତୀୟ ପୟର ପରି । ୬୦

୬୧

ତହୁଁ ନିର୍ଗମନେ    ସମୁଚ୍ଚ ଗଗନେ    ଚଳିବ କୈଳାସ ଚୂଳେ,
ଯହିଁ ଦଶାନନ    ଗିରି ଉଚ୍ଛ୍ୱସନ    କରିଥିଲା ଭୁଜମୂଳେ ।
ହିମ ଆସ୍ତରଣେ    ଦେବାଙ୍ଗନାଗଣେ    ଦର୍ପଣେ ଦେଖନ୍ତି ଆସ୍ୟ,
କୁମୁଦଧବଳ    ନଭଭେଦୀ ଶୈଳ    ଲାଗେ ଐଶ ଅଟ୍ଟହାସ୍ୟ । ୬୧

ଐଶ= ଶିବଙ୍କର (ଈଶ= ଶିବ)   ୨୦୧୮୧୨୦୫୧୫୦୦

୬୨

ଜାଜ୍ୱଲ୍ୟମଣ୍ଡିତ    ସଦ୍ୟ ଦ୍ୱିଖଣ୍ଡିତ    ଶ୍ୱେତ ହସ୍ତୀଦନ୍ତ ସମ
କୈଳାସର ତନୁ    ଦେଖିବ ଗଗନୁ    ଦର୍ଶନୀୟ ଅନୁପମ ।
ତୈଳାକ୍ତ ଶ୍ଳକ୍ଷନ    ସାନ୍ଦ୍ର ନେତ୍ରାଞ୍ଜନ    ସମ, ତୁମ ସନ୍ନିବେଶେ
ଅଦ୍ରି ବଳରାମ    ପ୍ରତେ ହେବ ଶ୍ୟାମ    ଉତ୍ତରୀୟେ ସ୍କନ୍ଧଦେଶେ । ୬୨

ଶ୍ଳକ୍ଷନ= ମସୃଣ, ଚିକ୍କଣ; ସ୍ନିଗ୍ଧ= ନରମ, କୋମଳ;   ୨୦୧୮୧୨୦୬୧୭୨୨

୬୩

ଗିରିଜାଶଙ୍କର    ବିକ୍ରୀଡା ପ୍ରାନ୍ତର    କୈଳାସ ପର୍ବତବରେ
ଉରଗବଳୟ    ତେଜି ମୃତ୍ୟୁଞ୍ଜୟ    ଧରିଥିବେ ଗୌରୀକରେ ।
ମଣି ତଟ ପଥେ    ଉମା-ପଶୁପତେ    ନ କରିବ ବୃଷ୍ଟି ଲେଶ,
ତୁହିନସୋପାନ    କରିବ ନିର୍ମାଣ,    ହରିବ ରୋହଣ କ୍ଲେଶ । ୬୩

ବିକ୍ରୀଡା ପ୍ରାନ୍ତର= କ୍ରୀଡାଭୂମି; ଉରଗବଳୟ= ସାପର କଙ୍କଣ; ତଟ= ଗଡାଣି, slope; ଉମା-ପଶୁପତି= ଉମାଶଙ୍କର; ତୁହିନସୋପାନ= ବରଫ ପାହାଚ; ରୋହଣ= (ପାହାଡ) ଚଢିବା, ଆରୋହଣ କରିବା;   ୨୦୧୮୧୨୦୬୨୧୦୦

୬୪

କୈଳାସ ଶିଖର-    ଦେବବାଳା କର-    କଙ୍କଣ-ବଜ୍ର ପ୍ରହାରି
ପର୍ଜନ୍ୟସଲିଳ    ଢାଳିବେ ପ୍ରବଳ    ତୁମ୍ଭଠାରୁ ଅମ୍ବୁଧାରୀ !
ନେବେ ବନ୍ଦୀ କରି    ସେ ସ୍ୱର୍ଗସୁନ୍ଦରୀ    ଯନ୍ତ୍ରଧାରାସ୍ନାନଘରେ,
ତପ୍ତ ଗ୍ରୀଷ୍ମକାଳେ    ମୁକ୍ତି ସେ ନଦେଲେ    ଭୀତି ଦେବ ତିକ୍ତସ୍ୱରେ । ୬୪

୩୦୧୮୧୨୦୭୦୩୪୫

୬୫

ସୁବର୍ଣ୍ଣକମଳ- ପ୍ରସବୀ ସମ୍ବଳ ମାନସପୁଷ୍କର କୋଳେ
କରି ଆସ୍ୱାଦନ, ବାସବ-ବାହନ !। ବିରାଜିଲେ ସେହି ସ୍ଥଳେ
ଢାଙ୍କି ତାର ଆସ୍ୟ କରିବ ରହସ୍ୟ, ତହୁଁ ଯିବ କଳ୍ପଦ୍ରୁମ,
ଦୋଳାଇବ ପତ୍ର ଯଥା ସୂକ୍ଷ୍ମବସ୍ତ୍ର, କରି କ୍ରୀଡା ଉପକ୍ରମ । ୬୫

ସମ୍ବଳ= ଜଳ; ମାନସପୁଷ୍କର= ମାନସ ମରୋବର; ଆସ୍ୟ= ମୁଖ; ୨୦୧୮୧୨୦୮୦୮୦୦

୬୬

ସେଠାରୁ ସଞ୍ଚରି ଅଳକା ନଗରୀ ଚଳିବ କୈଳାସ କୋଳ
ଯେ ସ୍ଥାନେ କୈଳାସ ଅଙ୍ଗୁ ପ୍ରିୟା-ବାସ ପ୍ରାୟ ଝରେ ଗଙ୍ଗାଜଳ ।
ଭାମିନୀଧାରିତ କୁନ୍ତଳଗ୍ରଥିତ ଉଭାସିତ ମୁକ୍ତା ପରି
କୃଷ୍ଣ ମେଘ କୋଳେ ତୁଙ୍ଗ ହର୍ମ୍ୟମାଳେ ଚିହ୍ନିବ ଅଳକାପୁରୀ । ।୬୬

ଭାମିନୀଧାରିତ= ସୁନ୍ଦରୀ ରମଣୀ ହାତରେ ଧରି ଥିବା; କୁନ୍ତଳଗ୍ରଥିତ= କେଶରେ ଗୁନ୍ଥା ହେଇ ଥିବା; ୨୦୧୮୧୨୦୮୧୭୦୦

## ପୂର୍ବମେଘଃ— ୧-୬୬ ହମାପ୍ତ

ଉତ୍ତରମେଘଃ

ତୁମ୍ଭଠି ଚପଳା ମୋ ଦେଶେ ଅବଳା, ଔନ୍ନତ୍ୟକୁ ସୌଧମାଳା,
ତୁମ୍ଭ ଇନ୍ଦ୍ରାୟୁଧ ସମସ୍ତ ଅମ୍ବୁଦ ଅଳକାର ଚିତ୍ରକଳା;
ତୁମ୍ଭ ଶ୍ରୀସମ୍ପଦ ଗମ୍ଭୀର ଶବଦ, ମୋ ଦେଶେ ଦୁନ୍ଦୁଭି ସ୍ୱନ,
ଉଦକ କଣିକା ପରାୟେ ସେଠିକା ମଣିମୟ ନିକେତନ । ୦୧

ଔନ୍ନତ୍ୟ= ଉଚ୍ଚତା, height;

ଅଳକା ଭାମିନୀ ଶୃଙ୍ଗାରକାମିନୀ ଷଡରତୁ ନବବେଶେ:
ପଦ୍ମପୁଷ୍ପଦଳ ଶ୍ରୀହସ୍ତ ସମ୍ବଳ, କୁନ୍ଦପୁଷ୍ପ କୃଷ୍ଣ କେଶେ,
ଲୋଧ୍ରପୁଷ୍ପକଣେ ସଜାନ୍ତି ଆନନେ, ଗଭା କୁରୁବକ ମାଳେ,
ଶିରୀଷ ସୁମନ କର୍ଣ୍ଣବିଭୂଷଣ ନୀପ ପୁଷ୍ପ ବର୍ଷାକାଳେ । ୦୨

ଭାମିନୀ= ସୁନ୍ଦରୀ ନାରୀ, fair lady; ଲୋଧ୍ରପୁଷ୍ପ= ଲୋଧ ଫୁଲ, Symplocos flowers;

ବିଟପୀବ୍ରତତି ନିତ୍ୟ ପୁଷ୍ପବତୀ ଅଳିପୁଞ୍ଜବିଳାସିନୀ;
ଚନ୍ଦ୍ରାହାର ସମା ହଂସପୁଞ୍ଜରମା ନିତ୍ୟପଦ୍ମା ପୁଷ୍କରିଣୀ,
ଭବନକଞ୍ଚାର ଉଦ୍ଘୋଷେ ଉଚ୍ଚାର ବର୍ଣ୍ଣୋଜ୍ଜ୍ୱଳେ ନୃତ୍ୟତାଳେ;
କୌମୁଦୀକ୍ଷାଳିତ ନିର୍ମଳ ନିଶୀଥ ନିତ୍ୟ ରମ୍ୟ ହର୍ମ୍ୟମାଳେ । ୦୩

ବିଟପୀବ୍ରତତି= ଗଛଲତା; ଅଳିପୁଞ୍ଜ= ଭ୍ରମରଦଳ; କୌମୁଦୀ= ଚନ୍ଦ୍ରାଲୋକ; ହର୍ମ୍ୟ= ଅଟ୍ଟାଳିକା, building;
୨୦୧୯୦୫୦୭୦୮୪୫

ସେ ଦେଶେ ଦୃଗ୍ଜଳ ନିଃସରେ କେବଳ ପ୍ରେମର ଆନନ୍ଦ ଭରେ,
ବିରଳ ବିରହ ପ୍ରେମର କଳହ ଭିନ୍ନ ଆନ ଅବସରେ,
ପ୍ରେମୀ-ପ୍ରେମାସ୍ପଦ କ୍ଷଣିକ ବିଚ୍ଛେଦ- ଜାତ ଅଶ୍ରୁବିସର୍ଜନେ,
ସେ ପୁରେ ବୟସ ନିତ୍ୟ ଏକରସ: ଆଜୀବନ ଯଉବନେ । ୦୪

ଦୃଗ୍ଜଳ (ଦୃକ୍+ଜଳ)= ଆଖିପାଣି, ଲୁହ; ୨୦୧୯୦୫୦୭୧୪୦୦

ହେଲେ ନିଷଦ୍ୱର ତହିଁ ଯକ୍ଷନର ରମ୍ୟା ରମଣିକି ଧରି
ସ୍ଫଟିକମଣିରେ ଦୀପ୍ତ ସୌଧଶିରେ ବିହରେ ବିଳାସ କରି ।
ପ୍ରାସାଦଶିଖର ତାରାମାଳକର ଲାଗେ ପୁଷ୍ପବିଚ୍ଛୁରଣ,
ଦୁନ୍ଦୁଭି ଶ୍ରବଣେ କରନ୍ତି ସେ ଜନେ ରତିସୁରା ଆଚମନ । ୦୫

ନିଷଦ୍ୱର= ରାତି; ୨୦୧୯୦୫୦୭୧୫୧୯

ମନ୍ଦାକିନୀନୀର- ପରଶା ଶିଶିର ଶୀକର ସମୀର କୋଳେ
ଥିବେ ରୂପବତୀ ଦେବେର୍ଷ୍ୟା ଯୁବତୀ କ୍ରୀଡାରତା କଉଶଳେ ।
ମନ୍ଦାର ତରୁର ଛାୟାରେ ବଲ୍ଲୂର ରକ୍ତବର୍ଣ୍ଣ ଭୂମି ତଳେ,
ମଣିକି ଲୁଚାଇ ଅପରେ ଖୋଜାଇ ଖେଳୁଥିବେ କୁତୁହଳେ । ୦୬

ଦେବେର୍ଷ୍ୟା= ଦେବତାମାନଙ୍କ ଈର୍ଷାଯୋଗ୍ୟା; ବଲ୍ଲୂର= ନିର୍ଜଳ, ଶୁଷ୍କ; ଭୂମି= ମାଟି; ୨୦୧୯୦୫୦୭୧୮୫୮

କାମୀ ପ୍ରେମୀଜନ ପ୍ରେୟସୀ ବସନ- କଟୀଗଣ୍ଠି ଦେଲେ ଖୋଲି
ସୁସୂକ୍ଷ୍ମବସନା ଲଜ୍ଜିତା ଲଳନା ବେଗେ ଲୁଚି ଯିବେ ବୋଲି
ପ୍ରଜ୍ୱଳ ସମୀପେ ଦେଖି ରତ୍ନଦୀପେ ନିକ୍ଷେପନ୍ତି ଚୂର୍ଣ୍ଣରାଜି,
ଲିଭେନା ଅନଳ ଅବଳାସମ୍ବଳ ଆକଳନ ଯାଏ ଭାଜି | ୦୭
ପ୍ରେୟସୀ ବସନ= ପ୍ରେମିକାର ବସ୍ତ୍ର; ସୁସୂକ୍ଷ୍ମ= ଅତି ସୂକ୍ଷ୍ମ;m ୨୦୧୯୦୫୦୮୦୨୨୬

ଖଣ୍ଡ ଖଣ୍ଡ ମେଘ ପ୍ରଭଞ୍ଜନବେଗ ଆହରି ସେ ପୁଣ୍ୟସ୍ଥଳେ
ପ୍ରାସାଦଶିଖରେ ରମ୍ୟ ଚିତ୍ରଘରେ ପ୍ରବେଶନ୍ତି ସୂଜ ଜଳେ,
ତହିଁ ଚିତ୍ରପଟ କରନ୍ତି ବିନଷ୍ଟ ଆର୍ଦ୍ର କରି ସ୍ୱଚ୍ଛ ଜଳେ,
ତହୁଁ ଭୟାତୁରେ ତେଜନ୍ତି ସେ ପୁରେ ପାପାଚାରଶଙ୍କା ଫଳେ | ୦୮
ସୂଜ= ସୁ (ଭଲ କରି)+ ଉଜ; ପାପାଚାରଶଙ୍କା= ଅପରାଧବୋଧ; ୨୦୧୯୦୫୦୯୦୩୦୩

ମଧ୍ୟରାତ୍ର ଲଗ୍ନେ ଅଳକାଗଗନେ ଅଭ୍ର ରାଶି ଅପସରି
ଚନ୍ଦ୍ରାତପ ଧାରେ ଚନ୍ଦ୍ରାତପ ଧାରେ ଚନ୍ଦ୍ରାତପେ ଗଲେ ଝରି
ଚନ୍ଦ୍ରକାନ୍ତ ଲଗା ତନ୍ତୁକେ ନିମ୍ନଗା ଶୀକର କଣିକାପାତେ
ପ୍ରେମାସ୍ୱଦା ବାଳା ଲଘୁ କରେ ଜ୍ୱାଳା ପ୍ରେମବନ୍ଧ ହେତୁ ରାତେ | ୦୯
ଅଭ୍ର= ମେଘ; ଚନ୍ଦ୍ରାତପ= ଚାନ୍ଦୁଆ; ଚନ୍ଦ୍ରାତପ= ଚନ୍ଦ୍ରାଲୋକ; ଚନ୍ଦ୍ରାତପ= ଖୋଲା ବଡ ଘର, open hall;
୨୦୧୯୦୫୦୯୧୯୩୩

ଅକ୍ଷୟ ସମ୍ପଦ- ଧାରୀ ଜନପଦ- ନିବାସୀ ଅନେକ ଜନ
ଦେବବାଳାଗଣେ ପ୍ରେମସମ୍ଭାଷଣେ କରିଥାନ୍ତି ଆମୋଦନ;
ଜନପଦ ଅନ୍ତେ ବୈଭ୍ରାଜ ବନସ୍ତେ ଧନପତି ଯଶୋଖ୍ୟାତି-
ଗାୟକ କିନ୍ନରେ ମିଳି ଯକ୍ଷନରେ ବିହରନ୍ତି ଅହୋରାତି | ୧୦
ବୈଭ୍ରାଜ= ବନର ନାମ; କିନ୍ନର= ଏକ ପ୍ରକାର ଦେବପୁରୁଷ, ଯେପରି କିନ୍ନର, ଗନ୍ଧର୍ବ, କିଂପୁରୁଷ ଆଦି;
୨୦୧୯୦୫୦୯୨୩୩୦

ନକ୍ତାଭିସାରିଣୀ ଅଳକାକାମିନୀ ଚଞ୍ଚଳ ପୟରପାତେ
ଗମନ୍ତେ ମନ୍ଦାର ପୁଷ୍ପପତ୍ରହାର ସ୍ୱର୍ଣ୍ଣ କର୍ଣ୍ଣଭୂଷ ସାଥେ
ଖସି ଥାଏ ତଳେ ବକ୍ଷୋଜମଣ୍ଡଳେ ସ୍ଥିତ ମଣିମାଳେ ମିଶି
ପ୍ରାତଃ ଦେଖି ଜନେ ଆକଳନ୍ତି ମନେ କେଉଁ ଦିଶି କାହା ନିଶି | ୧୧
ନକ୍ତ= ରାତି; କର୍ଣ୍ଣଭୂଷ= କାନଫୁଲ; ବକ୍ଷୋଜ= ସ୍ତନ; ଦିଶି= ଦିଗରେ (କଟି ଥିବ);

ସେଠା ସୁଦର୍ଶନା ବିଚିତ୍ରବସନା ସୁନୟନା କାମାତୁରା
ଅପାଙ୍ଗଚାଳନ କରନ୍ତି ଲୋଭନ ସେବି ସୁଦୁର୍ଲଭ ସୁରା;
ପତ୍ରପୁଷ୍ପକଳି ଅଳଙ୍କାରେ ଝଳି ପାଦେ ବୋଳି ଲାକ୍ଷାରସ
ନିୟୋଜି ସାଧନ କଳ୍ପତରୂତ୍ପନ୍ନ ତରୁଣେ କରନ୍ତି ବଶ | ୧୨
ଅପାଙ୍ଗ= ନେତ୍ରକୋଣ, ଲାଞ୍ଜି, କଟାକ୍ଷ, ବାଙ୍କ ଚାହାଣୀ; ଲାକ୍ଷା= ଅଳତା; କଳ୍ପତରୂତ୍ପନ୍ନ= କଳ୍ପବୃକ୍ଷରୁ ଉତ୍ପନ୍ନ;

୨୦୧୯୦୫୧୦୦୨୧୩

| | | |
|---|---|---|
| ପଲ୍ଲବଶ୍ୟାମଳ | ବଲ୍ଲଭ ସବଳ, | ଦିବ୍ୟାଂଶୁସୈନ୍ଧବେ ଭାରୀ, |
| ଗିରିସମୋଦଗ୍ର | ମୋ ଦେଶ କଞ୍ଜର | ପ୍ରଭେଦ-ପର୍ଜନ୍ୟକାରୀ; |
| ସୈନିକ ସକଳ | ସମରକୁଶଳ | ଅସୀମ ସାହସଧାରୀ, |
| ରାବଣ-କୃପାଣ- | ଲବ୍ଧ କ୍ଷତଚିହ୍ନ | ଆଖ୍ୟାନେ ଆଗ୍ରହ ଭାରି । ୧୩ |

ପଲ୍ଲବଶ୍ୟାମଳ= ପତ୍ରପରି ଶ୍ୟାମଳ, ଧୂସର; ବଲ୍ଲଭ= ଘୋଡା; ଦିବ୍ୟାଂଶୁସୈନ୍ଧବେ ଭାରୀ= ସୂର୍ଯ୍ୟଙ୍କ ଘୋଡାଠୁ ବଳବତ୍ତର; ପାହାଡ ସମାନ ଉଚ୍ଚ; (ଉଦଗ୍ର= ଉଚ୍ଚ;) କଞ୍ଜର= ହାତୀ; ପ୍ରଭେଦ= ହସ୍ତୀମନ୍ଦିରରୁ ନିର୍ଗତ ନିର୍ଯାସ; ପର୍ଜନ୍ୟ= ବର୍ଷା; ଆଖ୍ୟାନ= ବଖାଣିବା;

୨୦୧୯୦୫୧୦୨୨୨୨

| | | |
|---|---|---|
| ନିବାସୀ ନିପାତୀ- | ଭୟେ ତାଙ୍କ ସାଥୀ | ତେଜି ଥାଏ ପୁଷ୍ପଧନୁ, |
| ଭୁଲି ତା ପ୍ରତ୍ୟଞ୍ଚା | ହାରି ଥାଏ ବାଞ୍ଛା | ଶିହରିବ ନର ତନୁ, |
| ହରି ତା ଶକତି | ଯେ ଦେଶ ଯୁବତୀ | ରଖିଥାନ୍ତି ସୁଚାତୁରୀ: |
| ନୟନ-ତୂଣୀର | ବକ୍ରଦୃଷ୍ଟି-ଶର, | ସେହି ମୋ ଅଳକାପୁରୀ । ୧୪ |

ନିବାସୀ= (ସେଠି) ବାସ କରୁଥିବା; ନିପାତୀ= ନିପାତନକାରୀ ଶିବ; ତାଙ୍କ ସାଥୀ= ମଦନ; ପ୍ରତ୍ୟଞ୍ଚା= ଧନୁର ଗୁଣ;

୨୦୧୯୦୫୧୧୨୨୫୨

| | | |
|---|---|---|
| କୁବେରଭବନ | ଉତ୍ତରେ ତୋରଣ | ଇନ୍ଦ୍ରଧନୁ ପ୍ରାୟ ଶୋଭା |
| ସେହି ମୋ ଭବନ | ଦିଶୁଥିବ ଘନ ! | ବହୁ ଦୂରୁ ମନୋଲୋଭା । |
| ବାସ ଗଲେ ଚପି | ମନ୍ଦାର ବିଟପୀ | ପୁଷ୍ପଭାରେ ଖର୍ବକାୟ, |
| ହାତ ପାଶେ ଫୁଲ | ପୁଷ୍ପଦ ଅତୁଳ, | ପ୍ରିୟାର ଅର୍ଭକ ପ୍ରାୟ । ୧୫ |

ବିଟପୀ, ପୁଷ୍ପଦ= ଗଛ; ଖର୍ବକାୟ= ଅନୁଚ୍ଚ; ଅର୍ଭକ= ଶିଶୁ, ପୁତ୍ର, ସନ୍ତାନ;

୧୫୨୦୧୯୦୫୧୨୦୧୫୨

| | | |
|---|---|---|
| ଚୌଦିଗେ ପ୍ରାକାର, | ତା ମଧ୍ୟେ କାସାର, | ସୋପାନ ମର୍କତ ଶିଳା, |
| ବୈଦୁର୍ଯ୍ୟଖଚିତ | ନାଳସୁଶୋଭିତ, | ସୁବର୍ଣ୍ଣସାରସ ଲୀଳା । |
| ସରସୀ ନିବାସୀ | ଥିବେ ହଂସହଂସୀ | ଭୀତିହୀନ ସେ ପୁଷ୍କରେ, |
| ତୁମ୍ଭ ପ୍ରତ୍ୟାସନ୍ନେ | ନ ଭାଳିବେ ମନେ —ଯିବା ମାନସରୋବରେ । ୧୬ | |

ପ୍ରାକାର= ପଚେରୀ; କାସାର, ପୁଷ୍କର= ପୋଖରୀ; ମର୍କତ= ମର୍କତ ମଣି; ବୈଦୁର୍ଯ୍ୟ= ବୈଦୁର୍ଯ୍ୟ ମଣି; ନାଳ= ନାଡ; ସାରସ= ପଦ୍ମ; ପ୍ରତ୍ୟାସନ୍ନ= ନୈକଟ୍ୟ;ର ୨୦୧୯୦୫୧୨୦୩୨୧

| | | |
|---|---|---|
| ପୁଷ୍କରିଣୀକୂଳ | ଇନ୍ଦ୍ରନୀଳଚୂଳ | ଉପଶୈଳ କ୍ରୀଡାଙ୍ଗନ |
| ଆମ୍ଭ ପ୍ରିୟସ୍ଥଳ | ଚୌଦିଗେ ପିଙ୍ଗଳ | କର୍ବୁର ମଧୁରାବନ । |
| ତୁମ୍ଭ ଅନୁଗତା | ଅନମ୍ବରଲତା | ସମ ତାର ବର୍ଣ୍ଣବିଭା, |
| ଦେଖି ଏ କ୍ଷଣିକା | ତହିଁ ମୋ ଅଭୀକା | ଅମ୍ବକେ ଉଭାସେ କି ବା ।୧୭ |

ଉପଶୈଳ= ଛୋଟ ପାହାଡ ବା ବଡ ପଥର; ପିଙ୍ଗଳ= ହଳଦିଆ; କର୍ବୁର= ସୁନା; ମଧୁରା= କଦଳୀ; ଅନମ୍ବରଲତା, କ୍ଷଣିକା= ବିଜୁଳି; ଅଭୀକା= ପ୍ରେୟସୀ; ଅମ୍ବକେ ଉଭାସେ କିବା = ସତେ କି ଆଖି ଆଗରେ ଭାସି ଉଠେ;

ସେ ଗିରି ପରିତଃ    ମାଧବୀ ବେଷ୍ଟିତ    ମଣ୍ଡପ ସମୀପେ ଥାଏ
ନବପତ୍ରେ ଚାରୁ    ରକ୍ତାଶୋକ ତରୁ,    ନିକଟେ ବକୁଳଟାଏ ।
ହେବାକୁ ସପୁଷ୍ପ    ଅଶୋକ ଲୋଲୁପ    ଦୋହଦେ ପ୍ରିୟାର ପାଦ;
ବକୁଳ ପ୍ରତ୍ୟାଶୀ —    ତୁନ୍ଧି ମୋ ପ୍ରେୟସୀ    ନାଶିବ ତା ଅବସାଦ । ୧୮

ପରିତଃ= ପାଖରେ; ଦୋହଦ= food intake during pregnancy, ଛୁଆ ଜନ୍ମକରିବା ଆଗର ଖାଇବା, ସଦ;
୨୦୧୯୦୫୧୩୨୨୫୦

ବୃକ୍ଷ ସନ୍ନିଧାନେ    ରୁକ୍ମ ଉପାଦାନେ    ଉପବେଶ ଅବଲମ୍ବ,
ଆଲମ୍ବ ତହିଁର    ସ୍ଫଟିକ ମଣିର    ଅର୍ଭ-ରମ୍ଭ ବର୍ଣ୍ଣ ସ୍ତମ୍ଭ ।
ବର୍ହୀ ତୁମ ମିତ    ତହିଁ କରେ ନୃତ୍ୟ    ଆସି ନିତ୍ୟ ସାୟଂ କାଳେ,
କଙ୍କଣ ନିକ୍ୱଣ    କଲେ ଗୁଞ୍ଜରଣ    ମୋ ପ୍ରିୟାର କରତାଳେ । ୧୯

ରୁକ୍ମ= ସୁନା; ଉପବେଶ ଅବଲମ୍ବ= ବସିବା ବେଞ୍ଚ; ଆଲମ୍ବ= ଆଧାର; ଅର୍ଭ-ରମ୍ଭ= ଶିଶୁ ବାଉଁଶ; ବର୍ହୀ= ମୟୂର; ନିକ୍ୱଣ= ଶବ୍ଦ;
୨୦୧୯୦୫୧୪୦୦୫୯

ଦ୍ୱାରେ ଥିବ ଚିହ୍ନ    ମୋ ବିହୁନେ ମ୍ଳାନ:    ଶଙ୍ଖ ସଙ୍ଗେ ପଙ୍କଜିନୀ,
ସମସ୍ତ ନିଶାଣ    ଦେଖି ମରୁତ୍ୱାନ !    ମୋ ଭବନ ନେବ ଚିହ୍ନି ।
ବିଶ୍ୱପା ବିହୁନେ    ପୁଷ୍କରେ ଯେସନେ    ଗ୍ରାସି ଥାଏ ବିଷଣ୍ଣତା,
ମୋର ନିର୍ବାସନେ    ଥିବ ସେ ସଦନେ    ଦୁର୍ବିଷହ ନିଃଶୂନ୍ୟତା ।    ୨୦

ନିଶାଣ= ଚିହ୍ନ; ମରୁତ୍ୱାନ= ମେଘ; ବିଶ୍ୱପା= ଚନ୍ଦ୍ର;    ୨୦୧୯୦୫୧୪୦୧୫୪

ମତି ଯେବେ ଥିବ    ତ୍ୱରିତେ ପଶିବ    ପ୍ରତିଶ୍ରୟେ ତଡିତ୍ପତେ !
ହସ୍ତୀ-ଅର୍ଭ ପ୍ରାୟ    ହୋଇ ଖର୍ବକାୟ    ପ୍ରବେଶିବ ସାଧ ମତେ ।
ସେ ଦ୍ୟୂତ ପ୍ରାନ୍ତରେ    ସ୍ତମ୍ଭ ଶୀର୍ଷ ସ୍ତରେ    ନିବାହି ବିଗ୍ରହ ଭାର,
ଖଦ୍ୟୋତ ଅସିର    ପ୍ରକାଶି ସଧୀର    ନିରେଖିବ ଅଭ୍ୟନ୍ତର ।    ୨୧

ପ୍ରତିଶ୍ରୟ= ଘର; ତଡିତ୍ପତି= ମେଘ; ହସ୍ତୀ-ଅର୍ଭ= ହାତୀଛୁଆ; ଖର୍ବକାୟ= ଛୋଟ ଦେହଧାରୀ; ନିବାହି= ମେଣ୍ଟାଇ; ବିଗ୍ରହ= ଦେହ; ଖଦ୍ୟୋତ= ଜୁଳୁଜୁଳିଆ ପୋକ; ଅସିର= ରଶ୍ମି, କିରଣ;    ୨୦୧୯୦୫୧୪୦୩୨୨

ଥିବ ବିମ୍ବାଧରୀ    କୃଶାଙ୍ଗୀ ସୁନ୍ଦରୀ    ଦହନୀ-ବୀଜ-ଦନ୍ତିନୀ,
ମୃଗୀ ନେତ୍ରସାରେ,    ନମ୍ରା ସ୍ତନଭାରେ,    ସେହି ମୋର ସୀମନ୍ତିନୀ;
ନାଭିସୁଗଭୀରା    ଗତି ଶ୍ରାନ୍ତିଧୀରା    ସୁଚାରୁହାସିନୀ ବିରା,
ପ୍ରତେ ହେବ ବ୍ରହ୍ମା-    ହସ୍ତେ କୃତାଗମା    ସୃଷ୍ଟି ଆଦି ନାରୀ-ହୀରା ।    ୨୨

ଦହନୀ-ବୀଜ-ଦନ୍ତିନୀ= ଡାଳିମ୍ବମଞ୍ଜି ପରି ଦନ୍ତଯୁକ୍ତା; ନମ୍ରା= ନଇଁ ପଡିଥିବା; ଶ୍ରାନ୍ତିଧୀରା= ଶ୍ରାନ୍ତିରୁ ଧୀରା; ବିରା= ସ୍ତ୍ରୀ; କୃତାଗମା= ଅଗ୍ରଗଣ୍ୟା;
୨୦୧୯୦୫୧୪୦୪୪୫

ଦେଖି ଏକାକିନୀ ଅତ୍ୟଳ୍ପଭାଷିଣୀ ବିରହିଣୀ ସୁଶୋଭିନୀ,
ଜାଣିବ ସେ ଘନ ମୋ ନବଜୀବନ, ଚକ୍ରବାକୀ-କୁଟୁମ୍ବିନୀ ।
ଏ ଦୀର୍ଘ ବିରହ ଦାରୁଣ ଦୁଃସହ, ତନୁ ଦିଶୁଥିବ ମ୍ଳାନ,
ଶିଶିର ନଳିନ ପ୍ରାୟେ ଥିବ ଶୀର୍ଣ୍ଣ, ଅବା ଅବରୂପ ଆନ । ୨୩

କୁଟୁମ୍ବିନୀ= ସ୍ତ୍ରୀ; ଅବରୂପ= ବିକୃତ, ନଷ୍ଟାକୃତି; ଆନ= ଅନ୍ୟଥା, ଅନ୍ୟ କିଛି ପ୍ରକାରର; ୨୦୧୯୦୫୧୪୨୦୪୫

ମୋ ବିରହେ ତାର ଅଶ୍ରୁ ଧାର ଧାର ଶୁଖି ଫୁଲିଥିବ ଅକ୍ଷି,
ଉଷ୍ଣଶ୍ୱାସ ଫଳେ ବିବର୍ଣ୍ଣ ବାଗ୍ଦଳେ କରତଳ ଥିବ ରଖି ।
ଶ୍ରୀମୁଖମଣ୍ଡଳ ଆଲୋଳ କୁନ୍ତଳ ଅବଚ୍ଛଦ ଅନ୍ତରାଳେ
ଦିଶୁଥିବ ଯଥା କଳାପିନୀ ତ୍ରସ୍ତା ନିଶିଥିନୀ-ମେଘମାଳେ । ୨୪

ଅକ୍ଷି= ଆଖି; ବାଗ୍ଦଳ (ବାକ୍+ ଦଳ)= ଓଠ; ଅବଚ୍ଛଦ= ଘୋଡଣି, ଓଢଣି; କଳାପିନୀ= ଚନ୍ଦ୍ର;

ଆଦ୍ୟ ଆଲୋକନେ ଦେଖିବ ସଦନେ ପ୍ରିୟା ଥିବ ଉପାସନେ
ଅବା ଚିତ୍ରାଙ୍କନେ ମୋ ରୂପ-ବିଷଣ୍ଣେ ଦେଖି ଦେଖି କଳପନେ ।
ଅବା ପଞ୍ଜରିକେ ମୋ ପ୍ରିୟ ସାରିକେ ଥିବ ପ୍ରୀତିସମ୍ଭାଷଣେ
କହରେ ସାରିକା — ତୁ କି ମୋ ପରିକା ତାଙ୍କ କଥା କରୁ ମନେ? ୨୫

ଆଲୋକନ= ଦୃଷ୍ଟିପାତ; ୨୦୧୯୦୫୧୯୦୪୨୫

ମୋ ନାମ ଲିଖିତ ଗୀତି ସ୍ୱରଚିତ ଗାଉଥିବ କରାର୍ଗଳେ,
ସେ ବୀଣାର ତାର ପୋଛି ବାରମ୍ବାର ଭିଜୁଥିବ ନେତ୍ରଜଳେ ।
ସ୍ମରି ପଦେ ପଦେ ସେ ଗୀତସମ୍ପଦେ କରୁଥିବ ଅଭ୍ୟାଦାନ,
ଆସୁ ଆସୁ ମୋର ନାମ, ସେ ଗୀତର ଭୁଲି ଯାଉଥିବ ତାନ । ୨୬

କରାର୍ଗଳ= ବୀଣା, ତନ୍ତୁ, lute; ଅଭ୍ୟାଦାନ= ପ୍ରାରମ୍ଭ, start; ୨୦୧୯୦୫୧୯୦୫୩୫

୨୭

ପୂଜାପୁଷ୍ପକଳି ବିଛାଇ ଦେହଳୀ ମାଟିପରେ ଆଙ୍କି ଗାର,
ନିଜକୁ ପ୍ରବୋଧି ବିରହ ଅବଧି ନିତି ଗଣୁଥିବ ତାର ।
ବିଜନେ ସୁମରି ଗୋଟି ଗୋଟି କରି କଳ୍ପନାର ମଧୁରାତି,
ଏଭାବେ ଅବଳା ନିବାରନ୍ତି ଜ୍ୱାଳା ବିନିଗ୍ରହେ ଅତିପାତି ।୨୭

ଦେହଳୀ= ପ୍ରତିହାର ଭୂମି, thresh-hold; ବିନିଗ୍ରହ= ବିରହ, separation (ଓ ଅନ୍ୟାନ୍ୟ ଅର୍ଥ ଅଛି);

୨୮

ପୂଜା ପରବଣେ ବାନ୍ଧବୀ ଗହଣେ ଊଣା ଥିବ ଦିବା କ୍ଲେଶ,
ବିନିଦ୍ର ଶୟନେ ବଢିବ ବିଜନେ ରାତ୍ରି ହେଲେ ସମ୍ପ୍ରବେଶ ।
ପ୍ରବୋଧନ ଆଶେ ବାତାୟନ ପାଶେ ନିରେଖିବ ଭ୍ରାତୃଜାୟା,
ହେଲେ ତମସ୍ୱତୀ ପତିବ୍ରତା ସତୀ ଭୂତଳଲମ୍ବିତ କାୟା । ୨୮

